# ଯୁଗେ ଯୁଗେ ନାରୀ

ଜନସଂଖ୍ୟା ଶିକ୍ଷା ବିଭାଗ



## ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ଓଡ଼ିଶା, ଭୁବନେଶ୍ୱର

# ଯୁଗେ ଯୁଗେ ନାରୀ



ଜନସଂଖ୍ୟା ଶିକ୍ଷା ବିଭାଗ
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର , ଓଡ଼ିଶା, ଭୁବନେଶ୍ୱର

ବହିର ନାମ - **ଯୁଗେ ଯୁଗେ ନାରୀ**
ଲେଖିକା - **ଶ୍ରୀମତୀ କଳ୍ପନା ସାହୁ**
ସମୀକ୍ଷା - **ପ୍ରଫେସର ଡକ୍ଟର ଶ୍ରୀନିବାସ ମିଶ୍ର**
**ଡଃ ଉଦ୍ଧବ ଚରଣ ନାୟକ**
ପ୍ରକାଶକ/ସ୍ୱତ୍ୱାଧିକାରୀ - **ଶ୍ରୀ ଚୈତନ୍ୟ ଚରଣ ପ୍ରୁଷ୍ଟି,** ଆଇ. ଏ. ଏସ୍.
ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର
ସଂଯୋଜନା - **ଶ୍ରୀ ରମାକାନ୍ତ ରାଉତ**
ସଂଯୋଜକ, ଜନସଂଖ୍ୟା ଶିକ୍ଷା ବିଭାଗ, ଏସ୍. ଆର. ସି., ଓଡ଼ିଶା
ପ୍ରଚ୍ଛଦ - **ଶ୍ରୀ ପ୍ରଶାନ୍ତ ଦାସ**
ଛାପା ସଂଖ୍ୟା - **୫,୦୦୦**
ମୁଦ୍ରଣ - **ନିଶ୍ୱାସ, ଭୁବନେଶ୍ୱର**

Title of the book - **Juge Juge Nari**
Written by - **Smt. Kalpana Sahoo**
Reviewed by - **Prof. (Dr.) Shrinibas Mishra**
**Dr. U.C. Naik**
Publisher/Copy right - **Shri C. C. Prusty,** I. A. S.
Director, SRC, Orissa, Bhubaneswar
Co-ordinator - **Sri R. K. Rout**
Publication No. - **PE/SRC/22/95**
Cover Layout - **Shri Prasanta Das**
No of Copies - **5,000**
Printed at - **NISWASS, Bhubaneswar**

# ସୂଚୀପତ୍ର

# ପଦେ ଅଧେ

ସୁବିଧା ଓ ସୁଯୋଗର ଅଭାବ ଥିଲେ ହେଁ କେତେକ ନାରୀ ତୀକ୍ଷ୍ଣ ବୁଦ୍ଧି, ଅସୀମ ସାହସ, ଚରମ ତ୍ୟାଗ ଓ କଠୋର ସାଧନା କରି ସଂସାରରେ ନାମ କମେଇ ଯାଇଛନ୍ତି। ନିଜର ଉଲ୍ଲେଖନୀୟ ଅବଦାନ ପାଇଁ ସେମାନେ ଇତିହାସ ପୃଷ୍ଠାରେ ଅମର କୀର୍ତ୍ତି ଅର୍ଜନ କରିଛନ୍ତି। ବିପଦବେଳେ ସେମାନେ ସାହସ ଦେଖାଇ ପୁରୁଷଙ୍କୁ ମଧ୍ୟ ବଳି ଯାଇଛନ୍ତି। ଅଥଚ ଦୁଃଖର କଥା ଯେ ବିଂଶ ଶତାବ୍ଦୀର ଶେଷଭାଗରେ ୬ ବର୍ଷରୁ ୧୪ ବର୍ଷ ବୟସର ଝିଅମାନଙ୍କ ମଧ୍ୟରୁ ଶତକଡ଼ା ୭୪ ଭାଗ ପାଠପଢ଼ା ଛାଡ଼ି ମା'ମାନଙ୍କୁ ରୋଷେଇ କାମ, ପିଲା ଧରିବା ଓ ଗୋରୁଗାଈ, ମେଣ୍ଢା, ଛେଳି ଚରାଇବା କାମରେ ଲାଗୁଛନ୍ତି। ପୁଅମାନଙ୍କୁ ପୁଷ୍ଟିକର ଖାଦ୍ୟ ଖାଇବାକୁ ଦିଆଯାଇ ଝିଅମାନଙ୍କ ପାଇଁ ନିକୃଷ୍ଟ ଖାଦ୍ୟର ବ୍ୟବସ୍ଥା କରାଯାଉଛି। ରୋଗବ୍ୟାଧିରେ ପୁଅମାନଙ୍କର ଯେତିକି ଯତ୍ନ ନିଆଯାଉଛି ଝିଅମାନଙ୍କର ସେଭଳି ନିଆଯାଉ ନାହିଁ। ଗର୍ଭସ୍ଥ ଭ୍ରୂଣ ପୁଅ କିମ୍ବା ଝିଅ ପରୀକ୍ଷା କରି ଜାଣିଦେବା ପରେ ଅନେକ ପିତାମାତା କନ୍ୟା ସନ୍ତାନର ଭ୍ରୂଣକୁ ନଷ୍ଟ କରି ଦେଉଛନ୍ତି। ଯାହାଫଳରେ ବର୍ତ୍ତମାନ ଭାରତରେ ପୁଅ-ଝିଅଙ୍କ ଅନୁପାତ କମି ଆସିଲାଣି। ୧,୦୦୦ ଜଣ ପୁତ୍ର ସନ୍ତାନ ଜନ୍ମ ହେବାବେଳକୁ କନ୍ୟା ସନ୍ତାନ ଜନ୍ମହାର ୯୭୨ରେ ଆସି ପହଞ୍ଚିଲାଣି।

ଏହି ପରିପ୍ରେକ୍ଷୀରେ ୧୯୯୪ ମସିହା କାଏରୋ ସମ୍ମିଳନୀ ପ୍ରସଙ୍ଗ ଉଲ୍ଲେଖନୀୟ। ଆଜି ଜନ ବିସ୍ଫୋରଣ ସମସ୍ୟା ଯୋଗୁଁ ସମଗ୍ର ବିଶ୍ୱରେ ଆତଙ୍କ ଦେଖାଦେଇଛି। କିପରି ତାହାର ନିରାକରଣ ହୋଇପାରିବ, ତାହା ହିଁ ଥିଲା ସେହି ବିଶ୍ୱ ସମ୍ମିଳନୀର ଆଲୋଚ୍ୟ ବିଷୟ। ସେଠାରେ ସ୍ଥିର ହେଲା ନାରୀମାନଙ୍କୁ ଅବହେଳାରୁ ଉଦ୍ଧାର କରି ସେମାନଙ୍କର ବିକାଶ ସାଧନ ନ କଲେ ଜନ୍ମ ବିସ୍ଫୋରଣ ସମସ୍ୟାର ସମାଧାନ କରିହେବ ନାହିଁ। ବର୍ତ୍ତମାନ ଜନସଂଖ୍ୟା ବୃଦ୍ଧି ସମସ୍ୟାର ସମାଧାନ ନିମନ୍ତେ ନାରୀମାନଙ୍କ ମଧ୍ୟରେ ଶିକ୍ଷା, ସଚେତନତା ଓ ସାହସର ପ୍ରସାର ଅପରିହାର୍ଯ୍ୟ ହୋଇପଡ଼ିଛି। ନାରୀମାନେ ଯେକୌଣସି କ୍ଷେତ୍ରରେ ପୁରୁଷଙ୍କଠାରୁ ପଛେଇ ଯିବେ ନାହିଁ, ସମସ୍ତଙ୍କ ମନରେ ଏ ବିଶ୍ୱାସ ଦୃଢ଼ହେବା ଆବଶ୍ୟକ। ଏ କ୍ଷେତ୍ରରେ କେତେ ଜଣ ସାହସୀ ତଥା ଆଦର୍ଶ ବୀରା ନାରୀଙ୍କର ଜୀବନୀକୁ ନେଇ ଏହି ପୁସ୍ତକ ଲେଖାଯାଇଅଛି। ସେମାନଙ୍କର ସାଧନାର କାହାଣୀ ଆମର ଗାଁଗହଳିର ମହିଳାମାନଙ୍କୁ ପୁରୁଷମାନଙ୍କ ସମକକ୍ଷ ହୋଇ ଚାଲିବାକୁ ପ୍ରେରଣା ଯୋଗାଇବ ବୋଲି ଆଶାକରି ଏହି ପୁସ୍ତିକାଟି ରଚନା କରାଯାଇଅଛି।

# ଚଣ୍ଡାଶୋକଙ୍କୁ ଧର୍ମାଶୋକ କଲା କିଏ ?

ଅଢ଼େଇ ହଜାର ବର୍ଷ ତଳର କଥା । ସେତେବେଳେ ଓଡ଼ିଶାର ଲୋକେ ଖୁବ୍ ସାହସୀ ଓ ବୀର ଥିଲେ । ଓଡ଼ିଶା ଥିଲା ସ୍ୱାଧୀନ । ଏହାର ନାଁ ଥିଲା କଳିଙ୍ଗ । ଏବେ ଯାହାକୁ ବିହାର କହୁଛନ୍ତି ତା'ର ନାମ ଥିଲା ମଗଧ । ମଗଧରେ ଅଶୋକ ରାଜା ଥିଲେ । ସେ ଓଡ଼ିଶାର ଗୌରବ ଓ ବୀରତ୍ୱ କଥା ଶୁଣି ସହିପାରିଲେ ନାହିଁ । କଳିଙ୍ଗକୁ ଯୁଦ୍ଧରେ ଜୟ କରିବା ପାଇଁ ଇଚ୍ଛା କଲେ ।

ବହୁତ ସୈନ୍ୟସାମନ୍ତ ସେ ଯୋଗାଡ଼ କଲେ । ରାଜ୍ୟର ଯୁବକମାନଙ୍କୁ ଜବରଦସ୍ତ ସୈନ୍ୟବାହିନୀରେ ପୂରେଇଲେ । ହଠାତ୍ ଦିନେ ସେ କଳିଙ୍ଗ ଆକ୍ରମଣ କଲେ । କଳିଙ୍ଗବାସୀ ଥିଲେ ସ୍ୱାଧୀନତାପ୍ରିୟ । ଜୀବନ ଥିବାଯାକେ ପରାଧୀନ ହେବାକୁ ମନ କଲେ ନାହିଁ । ଜନ୍ମଭୂମିର ସ୍ୱାଧୀନତା ପାଇଁ ହସି ହସି ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେଲେ । ଲକ୍ଷେ ଲୋକ ଦେଶପାଇଁ ଜୀବନ ଦେଲେ । ଦେଢ଼ ଲକ୍ଷ ଲୋକ ବନ୍ଦୀ ହେଲେ । କେତେ ଲୋକ ଯେ ଖଣ୍ଡିଆ ଖାବରା ହେଲେ, ତାର ହିସାବ କିଏ କରିବ ?



ଅଶୋକ ମନେ ମନେ ଭାରୀ ଖୁସି ହେଲେ। ଏଇଥର କଳିଙ୍ଗ ଲୋକେ ଉଚିତ ଶିକ୍ଷା ପାଇଛନ୍ତି। ଆଉଥରେ ଯୁଦ୍ଧ କରିବାକୁ ସେମାନେ ସାହସ କରିବେ ନାହିଁ। ଯଦି ଯୁଦ୍ଧ କରନ୍ତି ସେ ସବୁ ବୀରଙ୍କୁ ମାରି ପଦା କରିଦେବେ। କଳିଙ୍ଗବାସୀ ସ୍ୱାଧୀନ ପତାକା ଉଡ଼ାଇ ପାରିବେ ନାହିଁ। ଦିନେ ବଡ଼ିଭୋରରୁ ଅଶୋକ ଛଦ୍ମବେଶରେ ଦୟା ନଦୀର କୂଳରେ ବୁଲୁଥାଆନ୍ତି। ଦେଖୁଥାଆନ୍ତି- କେଉଁ ପକ୍ଷର କେତେ ସୈନ୍ୟ ମରିଛନ୍ତି।



ଏହି ସମୟରେ କଳିଙ୍ଗର ବୁଢ଼ୀଟିଏ ସେଇଠି ବୁଲୁଥିଲା। ତା' ପାଖରେ ଦୁଇଟି ଛୋଟ ଛୋଟ ନାତିନାତୁଣୀ କାନ୍ଦୁଥିଲେ। ବୁଢ଼ୀ ସେମାନଙ୍କ ହାତଧରି କ'ଣ ଯେପରି ଖୋଜୁଥିଲା। ସମ୍ରାଟ ଏହା ଦେଖି ବୁଢ଼ୀଟିକୁ ପାଖକୁ ଡକେଇ ପଚାରିଲେ- "ଏ ବୁଢ଼ି! ଏତେ ସକାଳୁ ଏଠାରେ କ'ଣ ଖୋଜୁଛୁ? କିଛି ଦରକାର ଅଛି ଯଦି କହ। ମୁଁ ତୋତେ ସାହାଯ୍ୟ

କରିବି।''

ବୁଢ଼ୀଟି କାନ୍ଦୁ କାନ୍ଦୁ ହସି ପକାଇଲା। କହିଲା- ''ନା ପୁଅ, ତୁ ମୋତେ ସାହାଯ୍ୟ କରିପାରିବୁ ନାହିଁ। ମୁଁ ଯାହା ଖୋଜୁଛି, ତୁ ଦେଇପାରିବୁ ନାହିଁ।''

ଅଶୋକ ଖୁବ୍ ବଡ଼ପାଟିରେ ହସିଲେ। ପାଖରେ ସେନାପତି ଓ ମନ୍ତ୍ରୀମାନେ ଥିଲେ। ସେମାନେ ମଧ୍ୟ ହସିଲେ। କହିଲେ- ''ହେ ବୁଢ଼ି! ଇଏ ହେଉଛନ୍ତି ମହାବୀର ଅଶୋକ। ସେ ତୋ ଉପରେ ଖୁସି ହୋଇଛନ୍ତି। ଯାହା ମାଗିବୁ ତାହା ସେ ଦେଇପାରିବେ।''

ବୁଢ଼ୀଟି ପୁଣି ଶୁଖିଲା ହସ ହସି କହିଲା- ''ଏତେ ଛୋଟିଆ ଲୋକ ସେ କ'ଣ ଦେବ? ସେ ଖାଲି ନେଇ ଜାଣେ ସିନା ଦେଇ ଜାଣେ ନାହିଁ।'' ସେନାପତି ରାଗିଗଲେ। ସେ କହିଲେ- ''ତୁ ଗୋଟାଏ ଛାର ବୁଢ଼ୀ। ତୋର ଇମିତି କଅଣ ଲୋଡ଼ା ଯେ ସମ୍ରାଟ ତୋତେ ଦେଇପାରିବେ ନାହିଁ? ଯାହା ମାଗୁଛୁ ମାଗ।''

ସମ୍ରାଟ ଅଶୋକ ମଧ୍ୟ ସେନାପତିଙ୍କ କଥାରେ କଥା ମିଳେଇ କହିଲେ- ''ମୁଁ ସତ୍ୟ କରୁଛି, ତୁ ଯାହା ମାଗିବୁ ଦେବି। ରାଜ୍ୟରୁ ଅଧେ ମାଗିଲେ ବି ଦେଇଦେବି।''

ବୁଢ଼ୀଟି ମନେ ମନେ ଭାବିଲା- ''ଏଇ ଠିକ୍ ବେଳ। ସମସ୍ତେ ଏକାଠି ହୋଇଛନ୍ତି। ଏପରି ପଦେ କଥା କହିଦେବି ଯେ ଅଶୋକ କଳିଙ୍ଗ ମାଟି ଛାଡ଼ି ପଳାଇବାକୁ ବାଟ ପାଇବ ନାହିଁ।''

ଏଥର ମୁହଁ ଟେକି ବୁଢ଼ୀ କହିଲା- ''ବାପ! ସତ୍ୟ ଯେବେ କଲଣି ତେବେ କହୁଛି- ଏ ଛୁଆ ଦୁଇଟି ତିନି ଦିନ ହେଲା ନ ଖାଇ ନ ପିଇ କାନ୍ଦୁଛନ୍ତି। ଏଇଠି ଯୁଦ୍ଧରେ

ସେମାନଙ୍କ ବାପା ତିନି ଦିନ ତଳେ ମରିଯାଇଛି। ମୋର ରାଜ୍ୟ ଲୋଡ଼ା ନାହିଁ। ଯଦି ତମେ ମୋତେ କ'ଣ କିଛି ଦେବାକୁ ଚାହୁଁଛ ତେବେ ସେମାନଙ୍କ ବାପାକୁ ଫେରାଇ ଦିଅ।''

ବୁଢ଼ୀ କଥାରେ ସମସ୍ତେ ପୁଣି ହସି ଉଠିଲେ। ଅଶୋକ କହିଲେ- ''ତୁ ପାଗଳୀ ହୋଇଯାଇଛୁ ନା କ'ଣ? ମଲା ମଣିଷକୁ କିଏ କ'ଣ ଫେରାଇ ଆଣିପାରେ? ଏହାଛଡ଼ା ଆଉ ଯାହା ମାଗୁଛୁ ମାଗ, ମୁଁ ଦେବି।''

ବୁଢ଼ୀ କାହାରିକୁ ଡରେ ନାହିଁ। ନବାବ ମୁହଁରେ ସେ ଜବାବ ଦିଏ। ସେ କହିଲା- ''ମୁଁ ଜାଣେ ପୁଅ, ଛୋଟ ମୁହଁରେ ତୁମେ ବଡ଼ କଥା କହୁଥିଲ। ଗୋଟିଏ ଲୋକର ପ୍ରାଣ ଦେଇପାରୁନା ଅଥଚ ଲକ୍ଷ ଲକ୍ଷ ଲୋକର ପ୍ରାଣ ନେଲ କାହିଁକି? ଆମେ ସିନା ତମର ଶତ୍ରୁ। ଆମ ଦେଶର ମା', ଭଉଣୀ, ପୁଅ ଝିଅ ତ ଶତ୍ରୁ ନୁହନ୍ତି। ସେମାନେ କାନ୍ଦିଲେ ତମକୁ ବାଧୁନି? ତମ ମଗଧ କଥା ଟିକେ ଚିନ୍ତା କଲ। ମଗଧର ଘରେ ଘରେ ମଧ୍ୟ କାନ୍ଦଣାର ସୁଅ ଛୁଟୁଛି। କିଏ ପୁଅ ହରାଇଛି ତ କିଏ ନାତି ହରାଇଛି। କିଏ ସ୍ୱାମୀ ହରାଇଛି ତ କିଏ ଭାଇ, କିଏ ବାପ ହରାଇଛି। ତମେ ଏପରି କାମ କରୁଛ ଯେ ସମସ୍ତଙ୍କୁ କେବଳ କାନ୍ଦଉଛ? ଧିକ୍ ତମ ବଡ଼ପଣିଆକୁ!''

ଅଶୋକ ବୁଢ଼ୀର କଥାରେ ଚମକି ପଡ଼ିଲେ। କିଛି ସମୟ ନୀରବରେ ଭାବିଲେ। ମନେ ମନେ କହିଲେ ବୁଢ଼ୀ ଯାହା କହୁଛି ସତ ତ! ଏଇ ଅନାଥ ଶିଶୁମାନଙ୍କୁ ସେମାନଙ୍କ ବାପାଙ୍କ ପ୍ରାଣ ସେ ଦେଇପାରୁ ନାହାନ୍ତି। ଅଥଚ ତାଙ୍କ ଯୋଗୁଁ ଲକ୍ଷ ଲକ୍ଷ ଲୋକ ମଲେଣି। ହସେଇ ଖେଳେଇ

ପାଞ୍ଚ ଜଣଙ୍କୁ ଖୁସି କରିପାରିଲେ ମଣିଷ ଜନମ ଧନ୍ୟ ହେବ। ମଣିଷ ଯଦି ଅନ୍ୟକୁ କେବଳ କନ୍ଦାଏ ସେପରି ମଣିଷର ମହତପଣିଆ କେଉଁଠି ? ସେ ତ କେବଳ ଲୋକଙ୍କୁ କନ୍ଦାଉଛନ୍ତି। ଧିକ୍ ତାଙ୍କର ମଣିଷପଣିଆ !

ପିଲା:ମାନଙ୍କ କାନ୍ଦରେ ତାଙ୍କ ହୃଦୟ ତରଳିଗଲା। ସେ କାନ୍ଦି ପକାଇଲେ। ବୁଢ଼ୀଟିର ପାଦଧରି କହିଲେ- "'ମା', ମୋତେ କ୍ଷମା କର। ତୁମେ ମୋର ଆଖି ଖୋଲିଦେଇଛ। ତୁମ ଯୋଗୁଁ ମୁଁ ମୋର ମଣିଷପଣିଆ ଫେରିପାଇଛି। ମୁଁ ତ କ୍ଷମତା ଲୋଭରେ ଅନ୍ଧ ହୋଇ ଯାଇଥିଲି। ମଣିଷ ରକ୍ତରେ ହୋରି ଖେଳି ଆନନ୍ଦ ପାଉଥିଲି। ଏବେ ବୁଝୁଛି ଯିଏ ଜୀବନ ଦେଇପାରିବ ନାହିଁ, ତାର ଜୀବନ ନେବାର ଅଧିକାର ନାହିଁ। ତୁମେ ମୋତେ ଆଜି ଏହି ମହାନ୍ ଶିକ୍ଷା ଦେଲ। ମୋ ଅପରାଧ ପାଇଁ ମୋତେ କ୍ଷମା କର।"

ବୁଢ଼ୀଟି ଅଶୋକଙ୍କୁ ଉଠାଇଲା। ସମସ୍ତଙ୍କ ଆଖିରେ ଲୁହ ଭରିଦେଇ ବୁଢ଼ୀଟି ଫେରିଗଲା ନିଜର କୁଡ଼ିଆ ଘରକୁ।

ଅଶୋକଙ୍କ ମନରେ ଘୋର ପରିବର୍ତ୍ତନ ଆସିଲା। ସେ ସଙ୍ଗେ ସଙ୍ଗେ ସେନାପତିଙ୍କୁ ଯୁଦ୍ଧ ବନ୍ଦ କରିବାକୁ ଆଦେଶ ଦେଲେ। ସେ ଅନୁଭବ କଲେ- "ଅସ୍ତ୍ରର ଜୟ ଜୟ ନୁହେଁ। ହୃଦୟର ଜୟ ହିଁ ପ୍ରକୃତ ଜୟ।" ହୃଦୟ ଜୟ କଲେ ଶାନ୍ତି ମିଳେ। ଆନନ୍ଦ ମିଳେ। ଏହି କଥା ସେ ଧଉଳୀ ପାହାଡ଼ର ପଥର ଦେହରେ ଲେଖିଦେଲେ। ଏହାପରେ ଆଉ ସେ ଯୁଦ୍ଧ କଲେ ନାହିଁ।

କଳିଙ୍ଗର ବୁଢ଼ୀଟି କ'ଣ ନ କଲା ! ଚଣ୍ଡାଶୋକଙ୍କୁ ଧର୍ମାଶୋକ କରିଦେଲା। ସେ ଦିନର ସେ ବୁଢ଼ୀ ନ

ଥିଲେ ଅଶୋକ ଆହୁରି କେତେ ରାଜ୍ୟ ଜୟ କରିବାକୁ ଯାଇଥାନ୍ତେ। ଯୁଦ୍ଧରେ ପୁଣି ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣ ନେଇଥାଆନ୍ତେ।

ଅଶୋକ ଆଉ ଯୁଦ୍ଧ ନ କରି ବୌଦ୍ଧଧର୍ମ ଦୀକ୍ଷା ନେଲେ। ଜୀବହତ୍ୟା ମହାପାପ ବୋଲି ପ୍ରଚାର କଲେ। ଲୋକମାନଙ୍କ ମଙ୍ଗଳ ପାଇଁ ଅନେକ କାମ କଲେ। ବୁଢ଼ୀଟିର ବୁଦ୍ଧି ଯୋଗୁଁ ଅଶୋକ ହେଲେ ଇତିହାସର ଶ୍ରେଷ୍ଠ ସମ୍ରାଟ।

# ବୁଢ଼ୀ ବୁଦ୍ଧି ଶିଖେଇ ଦେଲା

ସାତ ଶହ ବର୍ଷ ତଳର କଥା। ଓଡ଼ିଶାର ରାଜା ଥିଲେ ନରସିଂହ ଦେବ। ତାଙ୍କର ମା' ସୂର୍ଯ୍ୟ ପୂଜା କରୁଥିଲେ। ସୂର୍ଯ୍ୟଙ୍କ ପାଇଁ ଗୋଟିଏ ସୁନ୍ଦର ଦେଉଳ ତୋଳାହେବା ପାଇଁ ତାଙ୍କ ମା' ଇଚ୍ଛା କଲେ। ନରସିଂହ ଦେବ ମା'ଙ୍କୁ ଖୁବ୍ ଭକ୍ତି କରୁଥିଲେ। ମା'ଙ୍କ ମନକାମନା ପୂରଣ କରିବା ପାଇଁ ସେ ରାଜି ହେଲେ। ମନ୍ତ୍ରୀ ଥିଲେ ଶିବେଇ ସାମନ୍ତରାୟ। ମନ୍ତ୍ରୀଙ୍କୁ ରାଜା ନରସିଂହ ଦେବ ଆଦେଶ ଦେଲେ- ''ଅତି ସୁନ୍ଦର ମନ୍ଦିରଟିଏ ତିଆରି କର। ସମୁଦ୍ର କୋଳରୁ ବଡ଼ି ସକାଳେ ସୂର୍ଯ୍ୟ ଆକାଶକୁ ଡେଇଁ ପଡ଼ନ୍ତି। ସେତେବେଳେ ତାଙ୍କର ପ୍ରଥମ କିରଣ ଯେପରି ମନ୍ଦିର ଉପରେ ପଡ଼େ।''

ରାଜ୍ୟର ସବୁ ବୁଦ୍ଧିମାନ ଲୋକଙ୍କୁ ଡକାଗଲା। ବିଚାର ଆଲୋଚନା ହେଲା। ସ୍ଥିର ହେଲା ଚନ୍ଦ୍ରଭାଗା ପାଖରେ ସମୁଦ୍ର କୂଳରେ ସୂର୍ଯ୍ୟଙ୍କ ପାଇଁ ମନ୍ଦିର ତିଆରି ହେବ।



ଏହି ମନ୍ଦିରର ନାମ ହେବ 'କୋଣାର୍କ ମନ୍ଦିର'। ମନ୍ତ୍ରୀ ରାଜ୍ୟର ଶହ ଶହ କାରିଗରଙ୍କୁ ଡକାଇଲେ। ଦୂର ଜାଗାରୁ ଅସୁମାରି ଶଗଡ଼ ପଥର ଅଣାହେଲା। ସମୁଦ୍ର ଭିତରେ ପଥର ପକାଇ ପ୍ରଥମେ ଉଚ୍ଚା କରିବା ପାଇଁ ଚେଷ୍ଟା ହେଲା। ମାତ୍ର ଯେତେ ପଥର ପକାଇଲେ ସବୁ ସମୁଦ୍ର ଗର୍ଭରେ ଲୁଚିଗଲା।



ଏହିପରି ମାସ ମାସ ଚାଲିଗଲା। ମନ୍ତ୍ରୀଙ୍କ ବୁଦ୍ଧି ପଛଟିଲା ନାହିଁ। ରାଜା ମଧ୍ୟ ବିରକ୍ତ ହେଲେ। ମନ୍ତ୍ରୀ ଭୟରେ ଲୁଚି-ଲୁଚି ବୁଲିଲେ। ଦିନେ ରାତିରେ ଗୋଟିଏ ବୁଢ଼ୀ ଘରେ ପହଞ୍ଚିଲେ। ବୁଢ଼ୀଟି ମନ୍ତ୍ରୀଙ୍କୁ ଚିହ୍ନି ନ ଥିଲା। କିନ୍ତୁ ଲୋକଟିର ମନଦୁଃଖ ଥିବା ଜାଣିପାରି ଘରେ ରଖାଇଲା।

ଗରିବ ବୁଢ଼ୀ। ଧାନବିଲରୁ ସାଉଁଟି ଆଣିଥିବା ସୁଆଁରେ ଟିକେ କ୍ଷିରି କଲା। ଗରମ କ୍ଷିରି ଥାଳିରେ ଢାଳି ମନ୍ତ୍ରୀଙ୍କୁ ଖାଇବାକୁ ଦେଲା। ମନ୍ତ୍ରୀ ତ ଭୋକରେ ଛଟପଟ ହେଉଥିଲେ। ସଙ୍ଗେ ସଙ୍ଗେ ଖାଇବା ପାଇଁ କ୍ଷିରି ଥାଳି ମଝିରେ ହାତ ପୂରେଇ ଦେଲେ।

କ୍ଷିରି ଗରମ ଥିଲା। ହାତ ପୋଡ଼ିଗଲା। ମନ୍ତ୍ରୀ ବିକଳରେ ଛଟପଟ ହୋଇ 'ଓହୋ' 'ଓହୋ' ହେଲେ। ବୁଢ଼ୀଟି ଘର ଭିତରକୁ ଯାଇଥିଲା ଆଉ କ'ଣ ଆଣିବା ପାଇଁ। ଧାଇଁ ଆସି ଲୋକଟିର ବିକଳ ଦେଖି ମନକଷ୍ଟ କଲା। କହିଲା-

''ବାପ ! ତୁ ତ ଆମ ମନ୍ତ୍ରୀ ଶିବେଇ ସାଆନ୍ତରାଙ୍କ ପରି ବୋକାମି କଲୁ। କ୍ଷିରି ଥାଳିରେ ସିନା କଡ଼ରୁ କଡ଼ରୁ ଖାଆନ୍ତି। ଗରମ କ୍ଷିରିର ମଝିରେ ହାତ ପୂରେଇ ଦେଲେ ହାତ ପୋଡ଼ିଯିବନି ?''



ଲୋକଟି ନିଜେ ମନ୍ତ୍ରୀ ଶିବେଇ ସାଆନ୍ତରା। ସେ ବୁଢ଼ୀକୁ ପଚାରିଲେ- ''ମାଉସୀ, ମନ୍ତ୍ରୀ କ'ଣ ଏପରି ବୋକାମି କରୁଛନ୍ତି ?''

ବୁଢ଼ୀ କହିଲା- ''ସମୁଦ୍ର କୂଳରେ ସିନା ପଥର ପକାଇ ପକାଇ ଭିତରକୁ ଗଲେ ଉଚ୍ଚା ପିଣ୍ଡି ହେବ। ତା' ଉପରେ ମନ୍ଦିର ତିଆରି ହେବ। ମନ୍ତ୍ରୀଙ୍କ ଲୋକେ ସମୁଦ୍ର ଭିତରକୁ ପଥର ଫୋପାଡୁଛନ୍ତି। ସମୁଦ୍ରର ଅଥଳ ପାଣିରେ ପଥର ବୁଡ଼ିଯାଉଛି। ପିଣ୍ଡି ହେବ ନା ମନ୍ଦିର ହେବ।''

ମନ୍ତ୍ରୀ ଆଉ ଖାଇବେ କ'ଣ ? ବୁଢ଼ୀଠାରୁ ବୁଦ୍ଧି ପାଇ ସଙ୍ଗେ ସଙ୍ଗେ ଚନ୍ଦ୍ରଭାଗା କୂଳକୁ ଧାଇଁଲେ । ମନ୍ଦିର ତିଆରି ପାଇଁ ଆସିଥିବା ଲୋକଙ୍କୁ କହିଲେ- "କୂଳରେ ପଥର ପକାଇ ଉଚ୍ଚା ପିଣ୍ଡି ତିଆରି କରି ଆଗକୁ ଚାଲ ।" ଏଥର ସତକୁ ସତ ଉଚ୍ଚା ପିଣ୍ଡି ତିଆରି ହେଲା । ତା'ଉପରେ ଗଢ଼ା ହେଲା କୋଣାର୍କ ମନ୍ଦିର ।

ଏହି କୋଣାର୍କ ମନ୍ଦିର ତିଆରି କରିବା ପାଇଁ ବାର ବର୍ଷ ଲାଗିଥିଲା । ବାର ଶହ ବଢ଼େଇ ଏହି ମନ୍ଦିର ଗଢ଼ିଥିଲେ । ପଥର ଦେହରେ ଅତି ସୁନ୍ଦର ସୁନ୍ଦର ମୂର୍ତ୍ତିସବୁ ସେମାନେ ଗଢ଼ିଦେଲେ । ବଡ଼ ଦେଉଳଟିର ଉଚ୍ଚତା ଥିଲା ୨୩୦ ଫୁଟ । ଏହା ପୃଥିବୀର ସବୁଠାରୁ ଉଚ୍ଚତମ ମନ୍ଦିର ଥିଲା । ଏହାର କାରୁକାର୍ଯ୍ୟ ଓ କାରିଗରମାନଙ୍କ କଳାବିଦ୍ୟାକୁ ପୃଥିବୀର ସବୁ ବଡ଼ ବଡ଼ ଲୋକେ ପ୍ରଶଂସା କରୁଛନ୍ତି । କିନ୍ତୁ ସେହି ବୁଢ଼ୀଟି ଯଦି ମନ୍ତ୍ରୀଙ୍କୁ ବୁଦ୍ଧି ଶିଖେଇ ଦେଇ ନ ଥାଆନ୍ତା ଆଜି ଆମେ କ'ଣ ଏତେ ସୁନ୍ଦର ମନ୍ଦିର ଦେଖିପାରୁଥାନ୍ତେ ? ଧନ୍ୟ ବୁଢ଼ି ! ଧନ୍ୟ ତୋର ବୁଦ୍ଧି !



# ନାରୀନେତ୍ରୀ ସରୋଜିନୀ

ଆଜକୁ ଶହେ ବର୍ଷ ତଳର କଥା । ମାଟ୍ରିକ୍ ପରୀକ୍ଷା ଅଳ୍ପଦିନ ଅଛି । ଶ୍ରେଣୀରେ ଶିକ୍ଷକ କହିଲେ- ''ସମସ୍ତେ ଏହି ଅଙ୍କଖଣ୍ଡିକ କଷି ମୋତେ ଦେଖାଅ ।'' କଷ୍ଟ ଅଙ୍କ । ମୁଣ୍ଡ ବୁଲେଇ ଦେଲା । ଯେତେ ଚେଷ୍ଟା କଲେ ମଧ୍ୟ ଅଙ୍କଟି କଷି ହେଲା ନାହିଁ ।

ସରୋଜିନୀଙ୍କୁ ସେତେବେଳେ ବାର ବର୍ଷ ବୟସ । ଭଲ ପଢୁଥିଲେ । କିନ୍ତୁ ଅଙ୍କଟି କଷି ହେଲା ନାହିଁ । ବହୁତ ଭାବିଲେ, ଚେଷ୍ଟା କଲେ । ଅଙ୍କଟି ନ ହେବାରୁ ବିରକ୍ତ ହେଲେ । ଶେଷରେ ଭାବି ଭାବି ଗୋଟିଏ ସୁନ୍ଦର କବିତା ଲେଖି ପକାଇଲେ ।

ଶିକ୍ଷକ ପଚାରିଲେ- ''ପିଲାଏ ! କ'ଣ ଅଙ୍କ ସରିଲା ?'' ସରୋଜିନୀ କିଛି କହୁ ନ ଥାନ୍ତି । ସେ ଭଲ ପଢୁଥିବାରୁ ଶିକ୍ଷକ ତାଙ୍କ ଟେବୁଲ୍ ଉପରୁ ଲେଖା କାଗଜଖଣ୍ଡିକ ଉଠାଇନେଲେ । ବିରକ୍ତିରେ ବଡ଼ପାଟି କରି ପଢ଼ିଲେ । ଦେଖିଲେ ଅଙ୍କ ବଦଳରେ ଲେଖାଯାଇଛି ଗୋଟିଏ ସୁନ୍ଦର କବିତା । ଶିକ୍ଷକଙ୍କ ରାଗ ଉଭେଇଗଲା । ସେ ସରୋଜିନୀଙ୍କ ପିଠି ଆଉଁଷି ଦେଇ କହିଲେ- ''ମା', ତୁ ବଡ଼ ହେଲେ ଜଣେ ଭଲ କବି ହେବୁ ।''

ଶିକ୍ଷକଙ୍କର ଏହି କଥାପଦକ ତାଙ୍କୁ ପ୍ରେରଣା ଦେଲା । ଅଳ୍ପଦିନ ମଧ୍ୟରେ ସେ ଦୁଇ ଶହ ପୃଷ୍ଠାର ଏକ ନାଟକ ଲେଖିଦେଲେ । ବାର ବର୍ଷ ବୟସରେ ସେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ ମାଟ୍ରିକ ପାଶ୍ କଲେ । ପରୀକ୍ଷାଫଳରେ

ଖୁସିହୋଇ ଛଅ ଦିନ ମଧ୍ୟରେ ୧୩ ଶହ ଧାଡ଼ିର ସୁନ୍ଦର କବିତା ଲେଖିଦେଲେ। ସେହି କବିତା ପଢ଼ି ବହୁ ଲୋକ ଖୁସି ହେଲେ। ସରୋଜିନୀଙ୍କର କବି ପ୍ରତିଭାକୁ ସେମାନେ ଧନ୍ୟ ଧନ୍ୟ କଲେ।



ତାଙ୍କର ମାଆ ବରଦା ଦେବୀ ଜଣେ କବି ଥିଲେ। ଝିଅର କବିତାଲେଖା ଦେଖିଲେ ସେ ଖୁସି ହେଉଥିଲେ। ବାପା ଅଘୋରନାଥ ଚଟ୍ଟୋପାଧ୍ୟାୟ ଥିଲେ ଜଣେ ବୈଜ୍ଞାନିକ। ସେ କହୁଥିଲେ- "କବିତା ଲେଖିଲେ ପେଟ ପୂରିବ ନାହିଁ। ବିଜ୍ଞାନ ପଢ଼ିଲେ କେତେ ନୂଆ ନୂଆ କଥା ବାହାର କରିବ। ବଡ଼ଲୋକ ହୋଇପାରିବ।"

ତେଣୁ ସେ ଝିଅକୁ ଷୋଳ ବର୍ଷ ହେଲାମାତ୍ରେ ଉଚ୍ଚ ଶିକ୍ଷା ପାଇଁ ବିଲାତ ପଠାଇଲେ। ସେଠାରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଢ଼ିଲେ। ତାଙ୍କର କବି ପ୍ରତିଭା ବିକଶିତ ହେଲା। ବିଲାତରେ ବଡ଼ ବଡ଼ କବି ତାଙ୍କର ପ୍ରତିଭା ଦେଖି ସମ୍ମାନ ଜଣାଇଲେ। ଇଂରାଜୀ ଭାଷାରେ ସେ

ଅତି ସୁନ୍ଦର କବିତା ଲେଖୁଥିଲେ। ଅନେକ ମନେକରୁଥିଲେ- ସେ ଭାରତୀୟ ନୁହନ୍ତି, ବିଲାତର ଅଧିବାସୀ! ତାଙ୍କୁ 'ଭାରତର ବୁଲ୍‌ବୁଲ୍' କୁହାଗଲା।

ସେ ଭଲ ଭାଷଣ ଦେଉଥିଲେ। ଏକକାଳୀନ ତିନି ଚାରି ଘଣ୍ଟା ଅନର୍ଗଳ ଭାଷଣ ଦେଇପାରୁଥିଲେ। ବିଲାତରେ ତାଙ୍କ ଦେହ ଭଲ ରହିଲା ନାହିଁ। ସେ ଭାରତକୁ ଫେରି ଆସିଲେ। ତାଙ୍କର ବିବାହ ହାଇଦ୍ରାବାଦ ନିଜାମ୍‌ଙ୍କ ଡାକ୍ତରଙ୍କ ସହିତ ହୋଇଥିଲା।

ସେତେବେଳେ ଗୋପାଳକୃଷ୍ଣ ଗୋଖଲେ ଥିଲେ ଭାରତର ଜଣେ ବଡ଼ ନେତା। ରାଜନୀତି କ୍ଷେତ୍ରରେ ଗାନ୍ଧିଜୀ ତାଙ୍କୁ ଖୁବ୍ ବେଶି ସମ୍ମାନ ଦେଉଥିଲେ। ତାଙ୍କୁ ଗୁରୁ ବୋଲି ମନେ କରୁଥିଲେ। ସେ ସରୋଜିନୀଙ୍କ କବିତା ପଢ଼ି ମୁଗ୍ଧ ହେଲେ। କିନ୍ତୁ ସେ ସରୋଜିନୀଙ୍କୁ ପଦେ କଥା କହିଲେ- ''ଘରେ ଯେତେବେଳେ ନିଆଁ ଲାଗିଛି, ସେତେବେଳେ ଗୀତ ଗାଇ ଲାଭ କଅଣ ?''

ସରୋଜିନୀ କବିଭାବରେ ଯଥେଷ୍ଟ ସୁନାମ ଅର୍ଜନ କରିସାରିଥିଲେ। ଇଂଲଣ୍ଡର ସବୁଠାରୁ ବଡ଼ ସାହିତ୍ୟ ଅନୁଷ୍ଠାନ ତାଙ୍କୁ ସଭ୍ୟା କରି ନେଇଥିଲା। ମାତ୍ର ଗୋଖଲେଙ୍କ ପଦେ କଥା ତାଙ୍କୁ ଆଉ ଏକ ନୂଆବାଟ ଦେଖାଇଦେଲା। ସେ ମନେ ମନେ ଭାବିଲେ ଗୀତ ଗାଇଲେ ନିଆଁ ଲିଭିବ ନାହିଁ। କୂଅ ପୋଖରୀରୁ ପାଣି ଆଣି ନିଆଁ ଲିଭାଇବାକୁ ପଡ଼ିବ ଅର୍ଥାତ୍ ଲୋକଙ୍କ ମଧ୍ୟରେ ଜାଗରଣ ଆଣି ଦେଶକୁ ସ୍ୱାଧୀନ କରିବାକୁ ହେବ।

ସେହି ବର୍ଷ ହାଇଦ୍ରାବାଦରେ ପ୍ରବଳ ବନ୍ୟା ହୋଇଥିଲା। ସେ ବୁଲି ବୁଲି ବନ୍ୟାବିପନ୍ନ ଲୋକଙ୍କ ସେବା କଲେ। ଦୁଃଖୀ ଲୋକଙ୍କ ସେବାରେ ଯେ ପରମ ଆନନ୍ଦ ମିଳେ

- ସେ ତାହା ଅନୁଭବ କଲେ । ଏହି ସମୟରେ ଗାନ୍ଧିଜୀ ଆରମ୍ଭ କଲେ 'ଅହିଂସା ଆନ୍ଦୋଳନ' । ସଙ୍ଗେ ସଙ୍ଗେ ସେ ବାପୁଜୀଙ୍କ ଆନ୍ଦୋଳନରେ ଝାସ ଦେଲେ । ସେ ବୁଝିଗଲେ- ଭାରତ ସ୍ୱାଧୀନ ନ ହେଲେ ଲୋକଙ୍କର ଉନ୍ନତି ହେବ ନାହିଁ ।

'ସ୍ୱାଧୀନତା ମଣିଷର ଜନ୍ମଗତ ଅଧିକାର' । ଭାରତର ପୁରପଲ୍ଲୀ ଓ ବିଦେଶରେ ବୁଲି ବୁଲି ଭାରତବାସୀଙ୍କ ସ୍ୱାଧୀନତା ପାଇଁ ସେ ଦାବି ଜଣାଇଥିଲେ । ଲୋକଙ୍କୁ ବିପ୍ଳବର ବାଣୀ ଶୁଣାଇଥିଲେ । ଇଂରେଜ ସରକାର ତାଙ୍କୁ ବାରଣ କଲେ । ମାତ୍ର ସେ ମାନିଲେ ନାହିଁ । ବାରମ୍ବାର ଜେଲ ଗଲେ । ସଭାସମିତିରେ ଭାଷଣ ଦେଇ ଲାଠିମାଡ଼ ଖାଇଲେ । ତାଙ୍କର ଦେଶପ୍ରୀତିକୁ ସମସ୍ତେ ଧନ୍ୟ ଧନ୍ୟ କଲେ । ୧୯୨୫ ମସିହାରେ ସେ ହେଲେ ଭାରତୀୟ ଜାତୀୟ କଂଗ୍ରେସର ସଭାନେତ୍ରୀ । ଜଣେ ନାରୀ ପକ୍ଷରେ ଏହା କମ୍ ଗୌରବର କଥା ନୁହେଁ ।



ଇଂରେଜମାନଙ୍କୁ ହଟାଇବା ପାଇଁ ଗାନ୍ଧିଜୀ ଲବଣ

ସତ୍ୟାଗ୍ରହ ଆରମ୍ଭ କଲେ । ୧୯୩୦ ମସିହା ଏପ୍ରିଲ ୪ ତାରିଖରେ ସମୁଦ୍ରରୁ ଲୁଣ ମାରିବାକୁ ଗାନ୍ଧିଜୀ ଦାଣ୍ଡିରେ ପହଞ୍ଚିଲେ । ତାଙ୍କ ସହିତ ଥାଆନ୍ତି ସରୋଜିନୀ ନାଇଡୁ । ଏହାପରେ ସରୋଜିନୀ ସତ୍ୟାଗ୍ରହର ନେତୃତ୍ୱ ନେଲେ । ପ୍ରଚଣ୍ଡ ଖରା । ଶୋଭାଯାତ୍ରା ଆଗରେ ଥାଆନ୍ତି ସରୋଜିନୀ ନାଇଡୁ । ନାରୀର ଲବଣିକୋମଳ ଦେହ । ପୋଲିସ୍‌ମାନେ ମଧ୍ୟ ସହି ନ ପାରି ଚେୟାରଟିଏ ଦେଲେ ବସିବା ପାଇଁ । ସରୋଜିନୀ କିନ୍ତୁ ଅଟଳ ରହିଲେ । ଲୁଣମରା ଚାଲିଲା । ସେ ପୋଲିସ୍ ହାତରେ ଗିରଫ ହେଲେ ।

୧୯୪୨ ମସିହାରେ 'ଭାରତଛାଡ଼' ଆନ୍ଦୋଳନ । ଦେଶସାରା ବିପ୍ଳବର ନିଆଁ ଜଳିଉଠିଲା । ଗାନ୍ଧିଜୀଙ୍କୁ ବନ୍ଦୀକରି ରଖାଗଲା ଆଗା ଖାଁ ପ୍ରାସାଦରେ । ସରୋଜିନୀ ମଧ୍ୟ ଗିରଫ ହୋଇ ସେଇଠି ରହିଲେ । ତାଙ୍କର ସବୁଠାରୁ ବଡ଼ କାମ ଥିଲା- ହିନ୍ଦୁ ଓ ମୁସଲମାନଙ୍କ ଭିତରେ ବନ୍ଧୁତା ବଢ଼ାଇବା, ଭାରତକୁ ଭାଗ ଭାଗ କରାଇ ନ ଦେବା । କିନ୍ତୁ ସ୍ୱାଧୀନତା ପାଇବା ବେଳକୁ ଭାରତ ଭାଗ ଭାଗ ହୋଇଗଲା । ତାଙ୍କ ମନରେ ବହୁତ କଷ୍ଟ ହେଲା ।

ଭାରତ ସ୍ୱାଧୀନ ହେଲା । ଉତ୍ତରପ୍ରଦେଶ ଥିଲା ସବୁଠାରୁ ବଡ଼ ରାଜ୍ୟ । ସରୋଜିନୀ ଏହି ରାଜ୍ୟର ରାଜ୍ୟପାଳ ହେଲେ । ସେ ଏତେ ବଡ଼ ପଦବୀରେ ଥିଲେ ମଧ୍ୟ ସବୁବେଳେ ଲୋକମାନଙ୍କ ସହ ମିଶୁଥିଲେ । ସେମାନଙ୍କ ସମସ୍ୟା ବୁଝୁଥିଲେ । ଶେଷରେ ୧୯୪୯ ମସିହା ମାର୍ଚ୍ଚ ମାସ ଦୁଇ ତାରିଖରେ ସେ ଆଖି ବୁଜିଦେଲେ । ଭାରତର ଲୋକେ ଆଖିରୁ ଲୁହ ଢାଳିଲେ ।

ସରୋଜିନୀ କବି ଥିଲେ, ନେତ୍ରୀ ଥିଲେ, ସେବିକା ଥିଲେ । ଭାରତର ନାରୀ ସମାଜର ସେ ଉଜ୍ଜ୍ୱଳ ନକ୍ଷତ୍ର । ସେ ମରି ମଧ୍ୟ ଅମର ହୋଇ ରହିଛନ୍ତି ।

# ମ୍ୟାଡ଼ାମ୍ କ୍ୟୁରୀ

କ୍ୟାନ୍‌ସର ବା କର୍କଟ ଏକ ମାରାତ୍ମକ ରୋଗ। ଏହି ରୋଗ ଦାଉରୁ ରକ୍ଷା ପାଇବା କଷ୍ଟ। ମାତ୍ର ଆଜି ରଞ୍ଜନରଶ୍ମି ବା ଏକ୍ସରେ ଯୋଗେ ବହୁଲୋକ ଏହି ରୋଗ ମୁହଁରୁ ବଞ୍ଚି ଯାଉଛନ୍ତି। ମ୍ୟାଡ଼ାମ୍ କ୍ୟୁରୀ କଠୋର ସାଧନା କରି 'ରେଡିୟମ୍' ଆବିଷ୍କାର କରିଥିଲେ। ଫଳରେ ଆମେ ରଞ୍ଜନରଶ୍ମି ବିଷୟରେ ଜାଣି ପାରିଛୁ। ଚିକିତ୍ସାକ୍ଷେତ୍ରରେ ତାକୁ ଲଗାଇ ପାରିଛୁ। ଦେହ ଭିତରର ଫଟୋ ଉଠାଇ କ'ଣ ରୋଗ ହୋଇଛି, ଜାଣିବା ଫଳରେ ଚିକିତ୍ସା କରି ହେଉଛି।

ତାଙ୍କର ବାପା ଥିଲେ ଶିକ୍ଷକ ଓ ମା' ଶିକ୍ଷୟିତ୍ରୀ। ଦୁଇ ଭଉଣୀ ଓ ଗୋଟିଏ ଭାଇର ସଂସାର। ମ୍ୟାଡ଼ାମ୍ କ୍ୟୁରୀଙ୍କ ନାଁ ଥିଲା 'ମାରିଆ'। ସେ ସବୁଠାରୁ ସାନ ଥିଲେ। ୧୮୬୭ ମସିହାରେ ପୋଲାଣ୍ଡରେ ତାଙ୍କର ଜନ୍ମ।

ସେ ପିଲାବେଳୁ ଖୁବ୍ ବୁଦ୍ଧିମତୀ ଥିଲେ। ଶ୍ରେଣୀରେ ସବୁବେଳେ ପ୍ରଥମ ହେଉଥିଲେ। ମାତ୍ର ଦଶ ବର୍ଷ ବୟସରେ ତାଙ୍କର ମା' ମରିଗଲେ। ସବୁଠାରୁ ଅଧିକ ବୋଝ ପଡ଼ିଲା ମାରିଆଙ୍କ ଉପରେ। ପାଠପଢ଼ା ସାଙ୍ଗକୁ ଘରକାମ। ଚାକରଟିଏ ରଖିବାକୁ ପଇସା ନ ଥିଲା। ଏଣେ ବଡ଼ ଭଉଣୀର ଭାରୀ ମନ ଡାକ୍ତରୀ ପାଠ ପଢ଼ିବ। ଏତେ ପଇସା ଆସିବ କୁଆଡୁ? ବାପା ଝିଅ କଥା ଶୁଣି ଆଖି ଛଳ ଛଳ କଲେ। ଏହି ଘଡ଼ିସନ୍ଧି ସମୟରେ ମାରିଆ ଦେଲା ସାହସ- "ନାନି! ତୁ ପଢ଼, ମୁଁ ଟଙ୍କା ଯୋଗାଇବି।"

ବଡ଼ ଭଉଣୀର ମନରେ ନିରାଶା ଭିତରେ ଆଶାର ହସ ଫୁଟିଲା। ସେ କହିଲା- "ତୁ ଛୁଆଟା। ପାଠ ପଢୁଛୁ। ପଇସା କୁଆଡୁ ଆଣିବୁ?"

ମାରିଆ କହିଲା- "ତୁ ପାଞ୍ଚ ବର୍ଷ ଡାକ୍ତରୀ ପଢ଼ିବୁ। ମୁଁ ଟିଉସନ୍ କରି ତୋତେ ପଇସା ଯୋଗେଇବି। ତୁ ଡାକ୍ତର ହେଲେ ମୋତେ ପଢ଼ାଇବୁ। ମୁଁ ଅଧିକ ପଢ଼ି ପାରିବି। କେହି ଜଣେ ବଡ଼ଲୋକ ନ ହେଲେ ସମସ୍ତଙ୍କ ପାଠ ଅଧାରେ ରହିଯିବ।"

ମାରିଆ ଘର ଘର ବୁଲି ପିଲାଙ୍କୁ ଟିଉସନ୍ କଲା। ନିଜେ ଅତି ଅଳ୍ପ ଖର୍ଚ୍ଚରେ ଚଳି ବଡ଼ଭଉଣୀଙ୍କୁ ଟଙ୍କା ଯୋଗାଇଲା। ବଡ଼ଭଉଣୀ ପ୍ୟାରିସ୍‌ରେ ଡାକ୍ତରୀ ପଢ଼ିଲେ।

ଶୀତଦିନ। ରାସ୍ତାରେ ବରଫ ପଡ଼ିଥାଏ। ମାରିଆର ଗରମ ପୋଷାକ ନ ଥାଏ। ବାପା କାଳେ ମନକଷ୍ଟ କରିବେ, ତେଣୁ ବାପା ବିଛଣାରୁ ଉଠିବା ଆଗରୁ ମାରିଆ ବାହାରିଯାଏ ଟିଉସନ୍ କରି। ବେଳେବେଳେ ଘରେ ଖାଇବାକୁ ନ ଥାଏ। ଖାଲି ପେଟରେ ମାରିଆ ଯାଏ ପଢ଼ାଇବାକୁ। ପଇସା ମଧ୍ୟ ସମସ୍ତଙ୍କଠାରୁ ନିୟମିତ ମିଳେ ନାହିଁ। ଆଉ ଉପାୟ କ'ଣ ବା ଅଛି?

ତାଙ୍କ ଘରଠାରୁ ୬୦ ମାଇଲ୍ ଦୂରରେ ଜଣେ ବଡ଼ ଲୋକଙ୍କ ଘରେ ଶିକ୍ଷୟିତ୍ରୀ କାମ ମିଳିଲା। ବାପାଙ୍କୁ ବୁଝେଇ ଶୁଝେଇ ସେ ଗଲେ। ତାଙ୍କର ପାଠପଢ଼ା ଓ ବ୍ୟବହାରରେ ସମସ୍ତେ ଖୁସି ହେଲେ। ସେହି ଘରର ବଡ଼ପୁଅ ଉଚ୍ଚଶିକ୍ଷା ପାଉଥିଲେ। ମାରିଆଙ୍କୁ ଦେଖି ଖୁସି ହୋଇଗଲେ। ତାଙ୍କୁ ବିବାହ କରିବାକୁ ଇଚ୍ଛା କଲେ। କିନ୍ତୁ ତାଙ୍କର ମା' ମନାକଲେ।

''ଆମ ଘରେ ଗରିବ ଘରର ଝିଅ ଚାକିରୀ କରୁଛି। ସେ ପୁଣି ଆମ ଘରର ବୋହୂ ହେବ!'' ବିବାହ ପ୍ରସ୍ତାବ ଭାଙ୍ଗିଗଲା।

ସେ ଘରୋଇ ଶିକ୍ଷୟିତ୍ରୀ କାମ ଛାଡ଼ି ବାପାଙ୍କ ପାଖକୁ ଫେରି ଆସିଲେ। ପୁଣି ପାଠପଢ଼ାରେ ମନଦେଲେ। ପଢ଼ିଲାବେଳେ ସେ ସବୁକିଛି ଭୁଲି ଯାଉଥିଲେ। ତାଙ୍କ ଚାରିପଟେ ଭୀଷଣ ପାଟିତୁଣ୍ଡ ହେଲେ ମଧ୍ୟ ତାଙ୍କୁ କିଛି ଜଣାପଡ଼େ ନାହିଁ।



[ ବିଜ୍ଞାନ ଜଗତର ଆଶ୍ଚର୍ଯ୍ୟ ମହିଳା ମାଡାମ କ୍ୟୁରି ]

କେତେ ଲୋକ ତାଙ୍କ ପଢ଼ା ଦେଖି ଥଟ୍ଟା ପରିହାସ କରନ୍ତି। ସେ ମୋଟେ ସେଥିରେ ମନ ପୂରାନ୍ତି ନାହିଁ।

ସେ ପଢୁ ପଢୁ କେତେକ ବୈଜ୍ଞାନିକ ପରୀକ୍ଷା ଶିଖିଲେ। ସେଥିରେ ତାଙ୍କୁ ବହୁତ ଆନନ୍ଦ ମିଳିଲା।

ଏହାଭିତରେ ବଡ଼ ଭଉଣୀଙ୍କର ଡାକ୍ତରୀ ପଢ଼ା ସରିଗଲା। ସେ ମାରିଆଙ୍କୁ ପାଖକୁ ଡାକିନେଲେ। ପ୍ୟାରିସ୍‌ଠାରେ ମାରିଆ ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇଲେ। ପତଳା ହୋଇ ସୁନ୍ଦରୀ ଝିଅଟିଏ। ଶ୍ରେଣୀରେ ଆଗ ବେଞ୍ଚରେ ବସିଥାଏ। ପଢ଼ିଲାବେଳେ କୁଆଡ଼କୁ ଅନାଏ ନାହିଁ। ସମସ୍ତେ ହସାହସି ହୁଅନ୍ତି।

ବଡ଼ ଭଉଣୀ ଡାକ୍ତର। କେତେ ବଡ଼ ବଡ଼ ଲୋକଙ୍କ ସହ ଚଳପ୍ରଚଳ। ମାରିଆଙ୍କୁ ଗହଳି ଭଲ ଲାଗିଲା ନାହିଁ। ସେ ଚାଲିଗଲେ ଗୋଟିଏ ଛୋଟିଆ ବସ୍ତିକୁ। ବାପା ଅଳ୍ପ କିଛି ପଇସା ପଠାନ୍ତି। ସେଇଥିରେ ବକତେ ଖାଇ ଦିନରାତି ବିଜ୍ଞାନ ପଢ଼ାରେ ମନଦେଲେ।

ଖୁବ୍ ଜୋର୍‌ରେ ଶୀତ ପଡ଼ିଥାଏ। ବୋତଲରେ ପାଣି ବରଫ ପାଲଟି ଯାଏ। ଗରମ ପୋଷାକ ନାହିଁ। ଚୁଲୀ ଜଳେଇବାକୁ ପଇସା ନାହିଁ। ନ ଖାଇ ନ ପିଇ ସୁନ୍ଦର ଝିଅଟି ଶୁଖି କଳା ପଡ଼ିଗଲା। ଦୁର୍ବଳ ହୋଇଗଲା। ଟାଲୁ ଟାଲୁ ପଡ଼ିଗଲା। ତଥାପି ପାଠପଢ଼ା ପାଇଁ ସେ ପାଗଳିନୀ। ସତେ ଯେପରି ପାର୍ବତୀଙ୍କ ପରି ସେ ତପସ୍ୟା କରୁଛି! ସେ ସବୁବେଳେ ଭାବୁଥାଏ କିଛି ଗୋଟିଏ ଭଲ କାମ କରିବାକୁ ହେଲେ କଷ୍ଟ ସହିବାକୁ ପଡ଼ିବ। କଷ୍ଟକୁ ଡରିଲେ ଇଷ୍ଟ ମିଳିବେ କୁଆଡୁ? ଆରାମରେ ଖାଇ ପିଇ ବିଳାସରେ ଜୀବନ କାଟି କେହି କିଛି ବଡ଼ କାମ କରିପାରି ନାହିଁ।

ଏହି ସମୟରେ ପ୍ୟାରି କ୍ୟୁରୀ ନାମକ ଜଣେ ବୈଜ୍ଞାନିକଙ୍କ ସହ ତାଙ୍କର ପରିଚୟ ହେଲା। ବିଜ୍ଞାନ ପାଠରେ ମାରିଆଙ୍କ ପ୍ରବଳ ଆଗ୍ରହ ଦେଖି ପ୍ୟାରି ତାଙ୍କୁ

ବିବାହ କଲେ। ଉଭୟଙ୍କ ଲକ୍ଷ୍ୟ ଏକ - କିଛି ବଡ଼ କଥା ଉଦ୍ଭାବନ କରିବେ। ଦୁଇ ବର୍ଷ ପରେ ଝିଅଟିଏ ହେଲା। ମେରିଙ୍କ ଉପରେ କେତେ ଦାୟିତ୍ୱ। ପାଠ ପଢ଼ିବେ। ପୁଣି ସ୍ୱାମୀଙ୍କୁ ବିଜ୍ଞାନାଗାରରେ ସାହାଯ୍ୟ କରିବେ। ଘରକାମ କରିବେ। ଝିଅର ଯତ୍ନ ନେବେ। ଏଣେ ନାନା ଅଭାବ ଅସୁବିଧା ଲାଗି ରହିଛି।

ପ୍ୟାରି ଓ ମାରିଆ କଥା ହେଲେ- ଏଭଳି ଏକ ବସ୍ତୁ ରହିଛି ଯାହାକି ରଞ୍ଜନରଶ୍ମି ସୃଷ୍ଟି କରୁଛି। ରଞ୍ଜନରଶ୍ମି ଏକପ୍ରକାର ଉଜ୍ଜ୍ୱଳ ନୀଳ ଆଲୋକ। ବୈଜ୍ଞାନିକମାନେ କହିଲେ- ''ବାହାର କର ସେ ବସ୍ତୁକୁ। ତୁମ କଥାର ସତ୍ୟତା ଜଣାପଡ଼ିବ।''



ପୁଣି ସ୍ୱାମୀ-ସ୍ତ୍ରୀ ପରୀକ୍ଷାରେ ଲାଗିଗଲେ। ଗୋଟିଏ ଛୋଟିଆ ଭଙ୍ଗାଘର ବହୁଦିନ ଧରି ପଡ଼ି ରହିଥିଲା। ଭଙ୍ଗାଭଙ୍ଗି ଜିନିଷ ଓ ଅଳିଆରେ ପୂରିଥିଲା। ସେହି ଘରଟିକୁ ଭଡ଼ା ନେଇ ବିଜ୍ଞାନାଗାର କଲେ। ପେଟକୁ ନ ଖାଇ ପିଠିକୁ ନ ପିନ୍ଧି ସେହି ପଇସାରେ ବୈଜ୍ଞାନିକ ଯନ୍ତ୍ରପାତି କିଣିଲେ। ପରୀକ୍ଷା ପରେ ପରୀକ୍ଷା ଚଳାଇଲେ। କିପରି ରଞ୍ଜନରଶ୍ମି ବାହାର କରିବେ- କେଉଁ ପଦାର୍ଥରୁ ରଞ୍ଜନରଶ୍ମି ବାହାରୁଛି। ଦିନରାତି ବିଭିନ୍ନ ଖଣିଜ ପଦାର୍ଥକୁ ନିଆଁରେ ତରଳାଇଲେ। କଠିନ ସାଧନାରେ ଲାଗିଗଲେ।

ବାଧା ପରେ ବାଧା। ଉପଯୁକ୍ତ ଖାଦ୍ୟର ଅଭାବରୁ ସ୍ୱାସ୍ଥ୍ୟ ଦୁର୍ବଳ ହୋଇପଡୁଛି। ସେଥିରେ ଏହିସବୁ କଷ୍ଟ। ସତେ ଯେପରି ପ୍ରାଣ ବାହାରିଯିବ। ଦିନ ପରେ ଦିନ, ମାସ ପରେ ମାସ ଓ ବର୍ଷ ପରେ ବର୍ଷ ବିତିଗଲା। ରଞ୍ଜନରଶ୍ମି ଆବିଷ୍କାରରେ ଦୁହେଁ ମନପ୍ରାଣ ଢାଳି ଦେଇଥିଲେ। ପ୍ୟାରି ଥରେ ବ୍ୟସ୍ତ ହୋଇ କହିଲେ- "ଟିକିଏ ସ୍ୱାସ୍ଥ୍ୟର ଯତ୍ନ ନିଅ। ଆଉ କିଛି ଭଲ ଯନ୍ତ୍ରପାତି ଆଣି ପରୀକ୍ଷା କରିବା।" ମେରିଆ କିନ୍ତୁ ପାଗଳିନୀ ହୋଇଗଲେ। ପରୀକ୍ଷାଗାରରୁ ଉଠିଲେ ନାହିଁ। ଶେଷରେ ମେରିଆଙ୍କ ଅସୀମ ଧୈର୍ଯ୍ୟ ଓ ସାଧନା ଆଗରେ ବାଧାବିଘ୍ନସବୁ ହାର ମାନିଲେ। ୧୮୯୮ ମସିହାରେ ସେମାନେ 'ରେଡିୟମ୍' ବା 'ରଞ୍ଜନରଶ୍ମି' ଆବିଷ୍କାର କଲେ।

କ୍ୟାନ୍‌ସର ରୋଗ ଭଲ କରିବାରେ ରେଡିୟମ୍ ବ୍ୟବହାର କରାଗଲା। ମେରିଆ ହେଲେ 'ମ୍ୟାଡ଼ାମ୍ କ୍ୟୁରୀ'।

ସ୍ୱାମୀ-ସ୍ତ୍ରୀଙ୍କୁ ବିଶ୍ୱବିଖ୍ୟାତ ନୋବେଲ୍ ପୁରସ୍କାର ମିଳିଲା। ଚାରିଆଡୁ ସମ୍ମାନ ଓଜାଡ଼ି ହୋଇପଡ଼ିଲା।

୧୯୦୬ ମସିହାରେ ପ୍ୟାରୀ କ୍ୟୁରି ଗୋଟିଏ ଟ୍ରକ୍ ଦୁର୍ଘଟଣାରେ ଦେହତ୍ୟାଗ କଲେ। ମେରିଆଙ୍କୁ ଖୁବ୍ ବଡ଼ ଧକ୍କା ହେଲା। କିନ୍ତୁ ସେ ଭାଙ୍ଗି ପଡ଼ି ନ ଥିଲେ। ଝିଅ ଦୁଇଟିଙ୍କୁ ମଣିଷ କରିବାକୁ ହେବ। ସେ ପୁଣି ଆଉ କିଛି ନୂଆ ବୈଜ୍ଞାନିକ ଉଦ୍ଭାବନରେ ଲାଗିପଡ଼ିଲେ। ୧୯୧୧ ମସିହାରେ କଠୋର ସାଧନା କରି ଆଉ ଥରେ ବିଶ୍ୱବିଖ୍ୟାତ ନୋବେଲ୍ ପୁରସ୍କାର ପାଇଲେ। ତାଙ୍କର ଉତ୍ତମ ଶିକ୍ଷା ଓ ପ୍ରେରଣା ଯୋଗୁଁ ତାଙ୍କ ଝିଅ ମଧ୍ୟ ଗବେଷଣାରେ ମନଦେଲେ। ଝିଅ ଓ ଜ୍ୱାଇଁ ସାଙ୍ଗ ହୋଇ ନୋବେଲ୍ ପୁରସ୍କାର ପାଇଥିଲେ। ଗୋଟିଏ ପରିବାରରୁ ଚାରିଜଣ ଲୋକ ଏତେବଡ଼ ସମ୍ମାନ 'ନୋବେଲ୍ ପୁରସ୍କାର' ପାଇବା ପୃଥିବୀ ଇତିହାସରେ ବିରଳ।

ମ୍ୟାଡ଼ାମ୍ କ୍ୟୁରୀ ନୋବେଲ୍ ପୁରସ୍କାର ଅର୍ଥକୁ ନିଜର ସୁଖସୁବିଧା ପାଇଁ ଖର୍ଚ୍ଚ କଲେ ନାହିଁ। ନିଜ ଦେଶରେ ଭଲ ବିଜ୍ଞାନାଗାର ପ୍ରତିଷ୍ଠା ପାଇଁ ସାହାଯ୍ୟ କଲେ। ଯେଉଁମାନେ ବୈଜ୍ଞାନିକ ପରୀକ୍ଷାରେ ମନପ୍ରାଣ ଦେଇ ଲାଗିଛନ୍ତି ଅଥଚ ଅର୍ଥ ପାଉ ନାହାନ୍ତି, ସେମାନଙ୍କୁ ସାହାଯ୍ୟ କଲେ। ବିଜ୍ଞାନ ସେବାରେ ନିଜର ଜୀବନକୁ ଉତ୍ସର୍ଗ କରି ୧୯୩୪ ମସିହାରେ ସେ ପ୍ରାଣତ୍ୟାଗ କଲେ।

# ଧାଈ ପାନ୍ନା

ରାଜସ୍ଥାନରେ ମେବାର ରାଜ୍ୟ । ଏଠାରେ ରାଜାମାନେ ବଡ଼ ବୀର । ସେମାନଙ୍କ ବୀରତ୍ୱର କାହାଣୀରେ ଇତିହାସ ପୃଷ୍ଠା ଉଜ୍ଜ୍ୱଳ । ଏହି ରାଜ୍ୟର ରାଜାମାନଙ୍କୁ 'ରାଣା' କୁହାଯାଏ । ଚିତୋର ଏହାର ରାଜଧାନୀ । ଏଠାରେ ରାଣା ସଂଗ୍ରାମ ସିଂହ ରାଜତ୍ୱ କରୁଥିଲେ । ଶତ୍ରୁମାନଙ୍କ ସହ ଯୁଦ୍ଧ କରୁ କରୁ ସେ ଜୀବନ ଦେଲେ ।

ତାଙ୍କର ଏକମାତ୍ର ପୁତ୍ର । ତାଙ୍କର ନାମ ଉଦୟ ସିଂହ । ପିତାଙ୍କର ମୃତ୍ୟୁବେଳକୁ ତାଙ୍କୁ ପାଞ୍ଚ ବର୍ଷ ହୋଇଥିଲା । ତେଣୁ ରାଜକାର୍ଯ୍ୟ ସମ୍ଭାଳିବା ଦାୟିତ୍ୱ ସଂଗ୍ରାମ ସିଂହଙ୍କ ଭାଇର ପୁଅ ବିକ୍ରମାଜିତଙ୍କ ଉପରେ ପଡ଼ିଲା । ସେ ଅତ୍ୟନ୍ତ ବିଳାସୀ ଓ ଅତ୍ୟାଚାରୀ ଥିଲେ । ତେଣୁ ତାଙ୍କଠାରୁ ରାଜ୍ୟ ଶାସନ ଭାର ଛଡ଼ାଇ ଆଣି ଗୋଟିଏ ଦାସୀପୁତ୍ର ବନବୀରଙ୍କୁ ଦିଆଗଲା ।

ବନବୀର ଆଗେ ଖୁବ୍ ଭଲ ଥିଲେ । ଭଲ ଯୁଦ୍ଧ କରୁଥିଲେ । କିନ୍ତୁ ରାଜ୍ୟର ଶାସନ କ୍ଷମତା ହାତକୁ ଆସିବା ପରେ ତାଙ୍କ ବୁଦ୍ଧି ଖରାପ ହୋଇଗଲା । ସେ ଭାବିଲେ ସବୁଦିନ କିପରି ରାଜା ହୋଇ ରହିବେ । ଉଦୟ ସିଂହ ତ ରାଜପୁତ୍ର । ବଡ଼ ହେଲେ ସେ ନିଶ୍ଚୟ ରାଜା ହେବେ । ବିକ୍ରମାଜିତ ମଧ୍ୟ କେତେବେଳେ ବିଦ୍ରୋହ କରିପାରନ୍ତି । ଏମିତି ଭାବି ସେ ଉଦୟ ସିଂହଙ୍କୁ ଓ ବିକ୍ରମାଜିତଙ୍କୁ ମାରି ସବୁଦିନ ରାଜା ରହିବା ପାଇଁ ସ୍ଥିର କଲେ ।

ସେହି ରାଜଦରବାରରେ ଜଣେ ଦାସୀ ଥିଲେ । ତାଙ୍କର ନାମ 'ପାନ୍ନା' । ଉଦୟ ସିଂହଙ୍କ ଲାଳନପାଳନ ଭାର

ଦାସୀ ପାନ୍ନାଙ୍କ ଉପରେ ଥିଲା । ସେ ପ୍ରାଣଭରି ଉଦୟ ସିଂହଙ୍କୁ ଭଲ ପାଉଥିଲେ । ପାନ୍ନାଙ୍କର ନିଜର ପାଞ୍ଚ ବର୍ଷର ପୁଅଟିଏ ମଧ୍ୟ ଥିଲା । ସେ ନିଜ ପୁଅ ଅପେକ୍ଷା ଉଦୟ ସିଂହଙ୍କର ଅଧିକ ଯତ୍ନ ନେଉଥିଲେ ।

ଦିନେ ହଠାତ୍ ରାଜପ୍ରାସାଦରେ ପାଟିତୁଣ୍ଡ ଶୁଭିଲା । ଜଣେ ଚାକର ଆସି ଧାଈ ପାନ୍ନାଙ୍କୁ ଖବର ଦେଲା- 'ବନବୀର ବିକ୍ରମାଜିତଙ୍କୁ ହତ୍ୟାକରି ସାରିଲାଣି ।' ଧାଈ ପାନ୍ନା ଦାସୀ ହେଲେ ମଧ୍ୟ ବୁଦ୍ଧିମତୀ ଥିଲେ । ରାଜପରିବାରରେ ବହୁବର୍ଷ ରହି ସେ ଅନେକ କଥା ଜାଣିଥିଲେ । ସେ ଅନୁମାନ କଲେ ନିଶ୍ଚୟ ବନବୀର ଉଦୟ ସିଂହଙ୍କୁ ହତ୍ୟା କରିବ । ସବୁଦିନ ଲାଗି ତା'ର ରାଜପଦ ଭୋଗ କରିବାର ବାଟ ସଫା ହୋଇଯିବ ।

ଘୋର ଅନ୍ଧାର ରାତି । ରାଜକୁମାର ପଲଙ୍କରେ ଶୋଇଥାନ୍ତି । ଧାଈ ପାନ୍ନାଙ୍କ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା । ସେ ସଙ୍ଗେ ସଙ୍ଗେ ରାଜକୁମାରଙ୍କୁ ଗୋଟିଏ ଟୋକେଇରେ ପୂରେଇ ଦେଲେ । ତା'ଉପରେ ଫୁଲ ଘୋଡ଼ାଇ ଦେଲେ । ଆଖିପିଛୁଳାକେ ଚାକର ହାତରେ ବାହାରକୁ ପଠାଇଦେଲେ । ରାଜକୁମାରଙ୍କ ଖଟରେ ନିଜର ପୁଅକୁ ଆଣି ଶୁଆଇଦେଲେ ।

ସତକୁ ସତ ଅତି ଅଳ୍ପ ସମୟ ପରେ ବନବୀର ଆସି ପହଞ୍ଚିଗଲା । ତା' ହାତରେ ଧାରୁଆ ଛୁରୀ ଚକ୍ ଚକ୍ କରୁଥାଏ । ସେ କର୍କଶ ଗଳାରେ ପଚାରିଲା- ''ରାଜକୁମାର କାହିଁ?'' ଦେଶର ଭବିଷ୍ୟତ ରାଜାଙ୍କୁ ରକ୍ଷା କରିବା ପାଇଁ ପାନ୍ନା ନିଜର ପୁଅଠାରୁ ଆଶା ଛଡ଼ାଇଦେଲା । ଆଖିରେ ଲୁହ ଭରିଗଲା । ତଥାପି ପଲଙ୍କ ଆଡ଼କୁ ହାତ

ଦେଖାଇ ଦେଲା । ବନବୀର ସଙ୍ଗେ ସଙ୍ଗେ ପାନ୍ନାଙ୍କ ପୁଅକୁ ରାଜକୁମାର ଭାବି ହତ୍ୟା କଲା ।



ଆଖି ଆଗରେ ନିଜ ପୁଅର ହତ୍ୟାରେ ପାନ୍ନାଙ୍କ ହୃଦୟ ଫାଟି ପଡୁଥାଏ । କିନ୍ତୁ ଡେରି ହେଲେ ଅସୁବିଧା । ସେ ପୁଅର ଶବକୁ ଛାଡ଼ିଦେଇ ରାତାରାତି ପଳେଇଗଲେ । ରାଜକୁମାରଙ୍କୁ ନିରାପଦ ସ୍ଥାନରେ ପହଞ୍ଚାଇ ଦେବା ତାଙ୍କର ଲକ୍ଷ୍ୟ । ଆଖପାଖ କେତେ ରାଜାଙ୍କ ପାଖକୁ ଗଲେ । କେତେ ଅନୁରୋଧ କଲେ ରାଜପୁତ୍ରଙ୍କୁ ଆଶ୍ରୟ ଦେବା ପାଇଁ । କିନ୍ତୁ ବନବୀରଙ୍କ ଭୟରେ କେହି ଆଶ୍ରୟ ଦେଲେ ନାହିଁ ।

ତଥାପି ଧାଇ ପାନ୍ନା ସାହସ ହରାଇ ନ ଥିଲେ । ସେ କମଲମୀର ରାଜ୍ୟକୁ ଗଲେ । ସେଠାକାର ରାଜା ଥିଲେ ଜୈନଧର୍ମୀ । ଜୈନମାନେ ଦୟାଳୁ । ପାନ୍ନା ଭାବିଥିଲେ ଏଇଠି ନିଶ୍ଚୟ ଆଶ୍ରୟ ମିଳିବ । କିନ୍ତୁ ହାୟ ! ଏ ରାଜା ମଧ୍ୟ ବନବୀରଙ୍କୁ ଡରିଲେ । କଥା ଧରାପଡ଼ିଲେ ତାଙ୍କର ରାଜଗାଦି ଚାଲିଯିବାର ଭୟ ହେଲା । ସେ ମନା କରିଦେଲେ ।

ଏହି ସମୟରେ ରାଜାଙ୍କର ମା' ପହଞ୍ଚି ସବୁ କଥା ଶୁଣିଲେ। ସେ ପୁଅକୁ ବାଧ କଲେ ଏଭଳି ଅବସ୍ଥାରେ ରାଜକୁମାରଙ୍କୁ ଫେରାଇ ନ ଦେବା ପାଇଁ। ରାଜା ମା'ଙ୍କ କଥା ମାନିଲେ। ରାଜକୁମାରଙ୍କୁ ତାଙ୍କର ଭଣଜା ବୋଲି କହି ସେ ପାଖରେ ରଖାଇ ବଢ଼ାଇଲେ। ପାନ୍ନା ଶୀଘ୍ର ରାଜପ୍ରାସାଦକୁ ଫେରି ଆସିଲେ। ନ ହେଲେ କେହି ହୁଏତ ସନ୍ଦେହ କରିଥାଆନ୍ତା।

ଚିତୋରରେ ଥାଇ ଧାଈ ପାନ୍ନା ଉଦୟ ସିଂହଙ୍କର ନିରାପଦ ଭବିଷ୍ୟତ ନିମନ୍ତେ ପ୍ରାର୍ଥନା କରୁଥାଆନ୍ତି। ସବୁବେଳେ ଗୁପ୍ତରେ ଉଦୟ ସିଂହଙ୍କ ଖବର ନେଉଥାନ୍ତି। କମଳମୀରର ରାଜଧାନୀ କୁମ୍ଭମେରୁ। ସେଠାରେ ରହି ଉଦୟ ସିଂହ ପାଠପଢ଼ା ସହ ଯୁଦ୍ଧବିଦ୍ୟା ଶିଖିଲେ। ବଡ଼ ହୋଇ ନିଜ ବୁଦ୍ଧି ଓ ବୀରତ୍ୱର ପ୍ରମାଣ ଦେଲେ।

କମଳମୀରର ରାଜାଙ୍କ ମାଆ ଦିନେ ରାତିରେ ଉଦୟ ସିଂହଙ୍କୁ ତାଙ୍କର ପରିଚୟ ଜଣାଇଦେଲେ। ତାଙ୍କର ବୀର ରକ୍ତ ତାତି ଉଠିଲା। ସେ କମଳମୀର ରାଜାଙ୍କ ସାହାଯ୍ୟରେ ଗୋଟିଏ ସେନାବାହିନୀ ଗଢ଼ିଲେ। ଯୁଦ୍ଧବିଦ୍ୟାରେ ସେମାନଙ୍କୁ ତାଲିମ ଦେଲେ।

ଚିତୋରରେ ବନବୀରଙ୍କ ଅତ୍ୟାଚାର ବଢ଼ି ବଢ଼ି ଚାଲିଥାଏ। କ୍ରମେ ଲୋକମୁଖରେ ଏହି କଥା ଜଣାପଡ଼ିଗଲା। ଚିତୋରରେ ବୀର ସର୍ଦ୍ଦାରମାନେ ପାନ୍ନାଙ୍କୁ ଧମକ ଦେଲେ। ଏହାର ସତ୍ୟତା ପଚାରିଲେ। ପାନ୍ନା ଦେଖିଲେ- ଆଉ ଡରିବାର ନାହିଁ। ଉଦୟ ସିଂହ ଏବେ ଜଣେ ମହାନ୍ ବୀର। ବନବୀର ତାଙ୍କର କିଛି କରିପାରିବ ନାହିଁ। ତେଣୁ ସେ ସବୁ ସତ କଥା କହିଦେଲେ।

ସର୍ଦ୍ଦାରମାନେ ମିଳିତ ହୋଇ କୁମ୍ଭମେରୁ ଗଲେ। ରାଜାଙ୍କୁ କହି ଉଦୟ ସିଂହଙ୍କୁ ଆଣି ଚିତୋରରେ ରାଜା କରାଇଲେ। ପାନ୍ନାଙ୍କର ଆତ୍ମତ୍ୟାଗ ଯୋଗୁଁ ଚିତୋରର ରାଜବଂଶ ରକ୍ଷା ପାଇଲା। ବନବୀର ଭୟରେ ବଣକୁ ପଳାଇଗଲେ।

ଧାଈ ପାନ୍ନାଙ୍କର ମନସ୍କାମନା ପୂର୍ଣ୍ଣ ହେଲା। ସେ ଉଦୟ ସିଂହଙ୍କୁ ରାଜଗାଦିରେ ଦେଖି ପୁତ୍ରଶୋକ ଭୁଲିଲେ। ଅନେକ ବର୍ଷ ବିତିଥିଲେ ମଧ୍ୟ ଆମେ ପାନ୍ନାଙ୍କର ସ୍ୱାର୍ଥତ୍ୟାଗ ଭୁଲି ପାରି ନାହୁଁ।

# ବିଦୂଷୀ ଖନା

ଦୁଇ ହଜାର ବର୍ଷ ତଳର କଥା। ମାଳବ ଦେଶରେ ବିକ୍ରମାଦିତ୍ୟ ବୋଲି ଜଣେ ରାଜା ଥିଲେ। ସେ ଭାରୀ ବିଦ୍ୱାନ୍ ଥିଲେ। ଗୁଣୀଲୋକମାନଙ୍କୁ ଆଦର କରୁଥିଲେ। ତାଙ୍କ ରାଜସଭାରେ ନଅଜଣ ପଣ୍ଡିତ ବ୍ୟକ୍ତି ଥିଲେ। ସେମାନଙ୍କୁ 'ନବରତ୍ନ' କୁହାଯାଏ। ସେମାନଙ୍କ ମଧ୍ୟରେ ମହାକବି କାଳିଦାସ ଥିଲେ। ଆଉ ଜଣେ ବିଶିଷ୍ଟ ଜ୍ୟୋତିଷୀ ଥିଲେ। ତାଙ୍କ ନାମ 'ବରାହ'। ଜ୍ୟୋତିଷମାନେ ମନୁଷ୍ୟର କର, କପାଳ ଓ କୋଷ୍ଠୀ ଦେଖି ବହୁ କଥା କହି ଦିଅନ୍ତି। ବରାହ ମନୁଷ୍ୟ ସହ ପଶୁପକ୍ଷୀଙ୍କର ଭାଗ୍ୟଫଳ ମଧ୍ୟ କହି ପାରୁଥିଲେ। ତେଣୁ ସମସ୍ତେ ତାଙ୍କୁ ସମ୍ମାନ ଦେଉଥିଲେ।

ବରାହଙ୍କର ପୁଅଟିଏ ହେଲା। ପୁଅ ନାମ ରଖିଲେ 'ମିହିର'। ବାପାଙ୍କ ପାଖରେ ବିଦ୍ୟା ଅଭ୍ୟାସ କରି ସେ ମଧ୍ୟ ଜଣେ ବଡ଼ ଜ୍ୟୋତିଷ ପାଲଟି ଗଲେ। ବିଦ୍ୟା ଅର୍ଜନ ପାଇଁ ତାଙ୍କର ଭାରି ଆଗ୍ରହ। ସେ ଦୂର ଦେଶକୁ ଯାଇ ଅଧିକ ଜ୍ଞାନ ଲାଭ ପାଇଁ ମନକଲେ। ବିଭିନ୍ନ ଦେଶ ଭ୍ରମଣ କଲେ। ଶେଷରେ ସିଂହଳ ଦ୍ୱୀପରେ ପହଞ୍ଚିଲେ। ସେଠାରେ ଶୁଣିଲେ 'ଖନା' ନାମରେ ଝିଅଟିଏ ଅଛି। ସେ ମଧ୍ୟ ଜ୍ୟୋତିଷ ବିଦ୍ୟାରେ ଖୁବ୍ ପାରିବାର। ମିହିର ଖନାଙ୍କୁ ଭେଟିଲେ। ତାଙ୍କ ପ୍ରତିଭାର ପରିଚୟ ପାଇଲେ। ଉଭୟ ପରସ୍ପରକୁ ଭଲ ପାଇଲେ। ଉଭୟଙ୍କ ମଧ୍ୟରେ ବିବାହ ହେଲା। ମିହିର ଖନାଙ୍କୁ ନେଇ ନିଜ ଦେଶକୁ ଫେରି ଆସିଲେ।

ଖନା ବଡ଼ ଜ୍ଞାନୀ ଓ ବୁଦ୍ଧିମତୀ ଥିଲେ। ତାଙ୍କ ମନରେ ଏଥିପାଇଁ ଟିକିଏ ହେଲେ ଗର୍ବ କି ଅଭିମାନ ନ ଥିଲା। ସେ ସାଧାରଣ ବୋହୂଟିଏ ଭଳି ଭଲ ରୋଷେଇ କଲେ। ଘର ଗୋଟାକର କାମ କଲେ। ଶ୍ୱଶୁର ଓ ସ୍ୱାମୀଙ୍କ ସେବାରେ ଲାଗିଲେ।

ସେତେବେଳେ ବରାହଙ୍କ ଘରକୁ ବହୁତ ଲୋକ ଜାତକ ଦେଖାଇବାକୁ ଆସୁଥିଲେ। କାଗଜକଲମ ତ ନ ଥିଲା। ବରାହ ମାଟିଖଡ଼ିରେ ଭୂଇଁ ଉପରେ ଗାର କାଟି ହିସାବ କରନ୍ତି। ବେଳେବେଳେ ବଡ଼ପାଟିରେ ହିସାବ କରୁଥିଲେ। ଯେତେବେଳେ ବରାହଙ୍କ ମୁହଁରୁ ଭୁଲ୍ ହିସାବ ବାହାରିଯାଏ ଖନା ନମ୍ରଭାବରେ କହନ୍ତି- "ବାପା, ଏଇଟା ଏଭଳି ନ ହୋଇ ଏ ଭଳି ହେବ କି?" ବରାହ ନିଜର ହିସାବ ଠିକ୍ କରି ନିଅନ୍ତି। ବୋହୂ ଉପରେ ଖୁସି ହୁଅନ୍ତି।

ଦିନେ ରାଜସଭାରେ ରାଜା ବରାହଙ୍କୁ ଗୋଟିଏ କଷ୍ଟ ପ୍ରଶ୍ନ ପଚାରିଲେ। ବରାହ ସଙ୍ଗେ ସଙ୍ଗେ ଉତ୍ତର ଦେଇ ନ ପାରି କହିଲେ- "ଆଜ୍ଞା, ଗଣନା କରି କାଲି କହିବି।" ଘରକୁ ଆସିଲେ। ଯେତେ ଚେଷ୍ଟା କଲେ ମଧ୍ୟ ସେ ପ୍ରଶ୍ନର ଉତ୍ତର ମିଳିଲା ନାହିଁ। ରାତିରେ ବୋହୂ ଖାଇବାକୁ ଡାକିଲେ। ବରାହ ସେହିଭଳି ଖଡ଼ି ଗୋଟାଳି ଧରି ହିସାବ କରୁଥାଆନ୍ତି। କହିଲେ- "ନା ମା' ମୋର ଆଜି ଖାଇବାକୁ ଇଚ୍ଛା ହେଉ ନାହିଁ। ରାଜା ଗୋଟିଏ କଷ୍ଟ ପ୍ରଶ୍ନ ଦେଇଛନ୍ତି। କାଲି ଉତ୍ତର ଦେବାକୁ ପଡ଼ିବ। ଯେତେ ଚେଷ୍ଟା କଲେ ମଧ୍ୟ ଗଣନା କରି ହେଉ ନାହିଁ।"

ଶ୍ୱଶୁରଙ୍କଠାରୁ ଖନା ରାଜାଙ୍କର ପ୍ରଶ୍ନ ଜାଣିଲେ।

ତା'ପରେ କହିଲେ- "ଆପଣ ଖିଆପିଆ କରନ୍ତୁ। ମୁଁ ଏହାର ଉତ୍ତର ବାହାର କରିଦେବି।" ବରାହ ଖିଆପିଆ କଲେ। ଖନା ଅଳ୍ପ ସମୟ ମଧ୍ୟରେ ଉତ୍ତର ଠିକ୍ କରିଦେଲେ। ବରାହ ବହୁତ ଖୁସି ହୋଇ ନିଶ୍ଚିନ୍ତରେ ଶୋଇଲେ।

ପରଦିନ ରାଜସଭାରେ ବରାହ ରାଜାଙ୍କ ପ୍ରଶ୍ନର ଉତ୍ତର ଜଣାଇଲେ। ରାଜା ବହୁତ ଖୁସି ହୋଇ ନିଜ ବେକରୁ ସୁନାହାରଟିଏ କାଢ଼ି ବରାହଙ୍କୁ ପୁରସ୍କାର ଦେଲେ। ବରାହ କିନ୍ତୁ ହାରଟି ନ ପିନ୍ଧି ନିଜ ବଟୁଆରେ ରଖିଲେ। ରାଜା ଏହାର କାରଣ ପଚାରିଲେ। ବରାହ କହିଲେ- "ମହାରାଜ! କାଲି ରାତିରେ ଏ ପ୍ରଶ୍ନର ଉତ୍ତର ମୋତେ ଆସୁ ନ ଥିଲା। ମୋର ବୁଦ୍ଧିମତୀ ବୋହୂ ଗଣନା କରି ଉତ୍ତରଟି କହି ଦେଇଥିଲା। ତେଣୁ ହାରଟି ତାକୁ ଦେବି।"

ରାଜା ଆଶ୍ଚର୍ଯ୍ୟ ହେଲେ। ତାଙ୍କ ରାଜ୍ୟରେ ଏପରି ବୁଦ୍ଧିମତୀ ନାରୀ ଅଛନ୍ତି ଶୁଣି ଖୁସି ହେଲେ। ସେ କହିଲେ- "ଠିକ୍ ଅଛି। ସେ ହାର ତୁମେ ପିନ୍ଧ। ମୁଁ ତୁମର ବୋହୂକୁ ଆହୁରି ଅଧିକ ମୂଲ୍ୟବାନ୍ ପୁରସ୍କାର ଦେବି। ତୁମେ ତାଙ୍କୁ କାଲି ସାଙ୍ଗରେ ରାଜସଭାକୁ ଆଣ। ଏଭଳି ଜ୍ଞାନୀ ନାରୀଙ୍କୁ ପାଇ ମୋ ରାଜ୍ୟ ଧନ୍ୟ।"

ବରାହ ହଁ ମାରି ଘରକୁ ଗଲେ। ଘରେ ଏକଥା ଆଲୋଚନା ହେଲା। ଗାଁରେ କିନ୍ତୁ ଅନେକ ଖଳଲୋକ ଥିଲେ। ସେମାନେ ଛି' ଛାକର କଲେ। ବୋହୂଟା ରାଜସଭାକୁ ଯିବ! ସମସ୍ତଙ୍କ ଆଗରେ ରାଜାଙ୍କ ପ୍ରଶ୍ନର ଉତ୍ତର ଦେବ! ଯଦି ରାଜାଙ୍କର ସବୁ ପ୍ରଶ୍ନର ଠିକ୍ ଉତ୍ତର ଦେବ, ତେବେ ରାଜା ବରାହଙ୍କଠାରୁ ତାକୁ ବେଶୀ ଆଦର କରିବେ।

ସବୁଦିନ ରାଜସଭାକୁ ଯିବାପାଇଁ କହିବେ। ଏକଥାଟା ଭଲ ହେବ ନାହିଁ ବୋଲି କହିଲେ।

କଥାରେ ଅଛି, ''ସାତ କଥାରେ ସତୀ ଟଳେ''। ବରାହ ତ ଥିଲେ ପୁରୁଣାକାଳିଆ ଲୋକ। କ୍ରମେ ସେ ମଧ ଅନୁଭବ କଲେ ତାଙ୍କ ଆନନ୍ଦର ଦିନ ସରିଆସୁଛି। ଗାଁରେ ଜଣେ ମନ୍ଦବୁଦ୍ଧି ଲୋକ କହିଲା- ''ବୋହୂଟିକୁ ଯଦି ଖନା କରି ଦିଆଯାଏ, ତେବେ ରାଜାଙ୍କୁ ସେ ତାଙ୍କ ପ୍ରଶ୍ନର ଉତ୍ତର କହିପାରିବ ନାହିଁ। ରାଜା ମଧ ତାଙ୍କୁ ଅଧିକ ଦିନ ରାଜସଭାକୁ ଆସିବାକୁ କହିବେ ନାହିଁ। ଖନା ଲୋକ କଥା କହିଲେ ସମସ୍ତେ ହସିବେ। ସେ ଅଧିକ କଥା କହୁ ବୋଲି କେହି ଚାହିଁବେ ନାହିଁ।''

ବରାହଙ୍କ ମନକୁ କଥାଟା ପାଇଲା। ସେ ପୁଅକୁ ଆଦେଶ ଦେଲେ ବୋହୂର ଜିଭ କାଟି ଦେବା ପାଇଁ। ମାତ୍ର ଏ ନିଷ୍ଠୁର ଆଦେଶ ପାଳନ କରିବାକୁ ପୁଅର ହାତ ଗଲା ନାହିଁ। ସେ ଦୁଃଖରେ ଭାଙ୍ଗି ପଡ଼ିଲେ।

ଖନା ଏକଥା ଶୁଣି ସ୍ୱାମୀକୁ ଆସି ବହୁତ ବୁଝାଇଲେ। କହିଲେ- ''ଏହି ଦେଶରେ ରାମଚନ୍ଦ୍ର ରାଜା ହୋଇଥାନ୍ତେ। ମାତ୍ର ପିତୃସତ୍ୟ ପାଳି ଚଉଦ ବର୍ଷ ବନକୁ ଗଲେ। ଅଥଚ ତୁମେ ମୋ ପାଇଁ ବାପାଙ୍କ ଆଦେଶ ପାଳନ କରୁନା! ବାପାଙ୍କ ଖୁସିରେ ମୋର ଖୁସି। ମୋର ଜୀବନ ଧନ୍ୟ ହେବ। ତୁମେ ମୋର ଜିଭ କାଟି ଦିଅ। ନଚେତ୍ ରାଜା ତ ମୋତେ ପ୍ରତିଦିନ ରାଜସଭାକୁ ଡକାଇବେ। ମୁଁ ରୋଷେଇବାସ କରି ତୁମମାନଙ୍କ ସେବା କରିପାରିବି ନାହିଁ। ସେବା ହିଁ ନାରୀର ଧର୍ମ।''



ମିହିର ଶେଷରେ ବାପାଙ୍କ ଇଚ୍ଛା ପୂରଣ କଲେ। ଖନାଙ୍କ ଜିଭ କାଟିବାକୁ ବାଧ ହେଲେ। ଜିଭ କଟିଯିବାର ଅଳ୍ପଦିନ ପରେ ଖନାଙ୍କ ମୃତ୍ୟୁ ହେଲା।

ସେ ବର୍ଷା, ପାଣିପାଗ ଓ କୃଷି ସମ୍ପର୍କରେ ବହୁତ ସାର କଥା କହି ଯାଇଛନ୍ତି। ହଜାର ହଜାର ବର୍ଷ ବିତିଯାଇଥିଲେ ମଧ୍ୟ ତାଙ୍କ କଥା ଅନୁସାରେ ଆମର ଚାଷୀଭାଇମାନେ ଚାଷକାମ କରୁଛନ୍ତି। ଖନାଙ୍କ ବୁଦ୍ଧି ଓ ତ୍ୟାଗ ନିମନ୍ତେ ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କହୁଛନ୍ତି।

# ବୀରାରାଣୀ ଶୁକଦେଈ

ମହାନଦୀ କୂଳରେ ବାଙ୍କି ଅଞ୍ଚଳ। ଚର୍ଚ୍ଚିକା ଦେବୀ ସେଠାରେ ଅନେକ ବର୍ଷ ଧରି ପୂଜା ପାଇ ଆସୁଛନ୍ତି। ଆଗେ ବାଙ୍କି ଗୋଟିଏ ଛୋଟିଆ ରାଜ୍ୟ ଥିଲା। ଏହାର ରାଜାମାନେ ବୀର ଥିଲେ। ସବୁବେଳେ ସ୍ୱାଧୀନ ହୋଇ ରହିଥିଲେ। ପାଖରେ ଖୋର୍ଦ୍ଧା ରାଜ୍ୟ। ଏ ରାଜ୍ୟଟି ବଡ଼। କିନ୍ତୁ ରାଜାମାନେ ବୀର ହେଲେ ମଧ୍ୟ ଶାନ୍ତିପ୍ରିୟ ଥିଲେ। ଦୁଇ ରାଜ୍ୟ ମଧ୍ୟରେ ବନ୍ଧୁତା ଥିଲା।

ସବୁଦିନ ସମାନ ଯାଏ ନାହିଁ। ମାତ୍ର ଅଢ଼େଇ ଶହ ବର୍ଷ ତଳର କଥା। ବାଙ୍କିରେ ରାଜତ୍ୱ କରୁଥିଲେ ଧନୁର୍ଜୟ ଶ୍ରୀଚନ୍ଦନ। ସେ ବୁଢ଼ା ହୋଇ ଯାଇଥିଲେ। ତଥାପି ତାଙ୍କର ବୀରପଣିଆ ଯାଇ ନ ଥିଲା।

ଖୋର୍ଦ୍ଧାର ରାଜାଙ୍କ ମନରେ ମନ୍ଦବୁଦ୍ଧି ପଶିଲା। ସେ ଭାବିଲେ ବାଙ୍କିର ରାଜା ବୁଢ଼ା ହୋଇଗଲେଣି। ହଠାତ୍ ଯୁଦ୍ଧ କଲେ ସେ ହାରିଯିବେ। ବାଙ୍କିକୁ ଖୋର୍ଦ୍ଧା ରାଜ୍ୟରେ ମିଶାଇ ଦେଇ ହେବ। ଏହିପରି ଭାବି ସେ ଯୁଦ୍ଧ ଆରମ୍ଭ କରିଦେଲେ। ବୀର ଧନୁର୍ଜୟ ମଧ୍ୟ ଯୁଦ୍ଧଭୂମିରେ ପହଞ୍ଚିଲେ।

ଖୋର୍ଦ୍ଧା ରାଜା ବାଙ୍କି ଆକ୍ରମଣ କରିବା ପାଇଁ ଆଗରୁ ସଜବାଜ ହୋଇଥିଲେ। ତାଙ୍କ ସୈନ୍ୟଙ୍କ ସଂଖ୍ୟା ବହୁତ ବେଶୀ ଥିଲା। ବାଙ୍କିବାସୀ ଏପରି ସହସା ଯୁଦ୍ଧ କଥା ଆଶଙ୍କା କରି ନ ଥିଲେ। ବାଙ୍କିର ସୈନ୍ୟମାନେ ସଂଖ୍ୟାରେ କମ୍ ଥିଲେ।

ଖୋର୍ଦ୍ଧା ସୈନ୍ୟମାନେ ସମୁଦ୍ର ଲହରୀ ପରି ଚାରିଆଡୁ ଘେରି ଆସିଲେ। ଯୁଦ୍ଧକ୍ଷେତ୍ରରେ ରାଜା ବୀର ଧନୁର୍ଜୟ ଜୀବନ ଦେଲେ। ବାଙ୍କି ସୈନ୍ୟ ପଳାଇଗଲେ।

ବାଙ୍କିର ରାଣୀ ଥିଲେ ଶୁକଦେଈ। ପିଲାଦିନରୁ ଯୁଦ୍ଧବିଦ୍ୟା ପ୍ରତି ତାଙ୍କର ଆଗ୍ରହ ଥିଲା। ରାଜପରିବାରର ବୋହୂ ହୋଇ ଶାସ୍ତ୍ରଚର୍ଚ୍ଚା ଓ ଯୁଦ୍ଧବିଦ୍ୟା ସେ ଉଭୟ ଶିକ୍ଷା କରିଥିଲେ। ହଠାତ୍ ସ୍ୱାମୀଙ୍କର ଅକାଳ ମୃତ୍ୟୁ ତାଙ୍କ ପ୍ରାଣରେ ଦାରୁଣ ଆଘାତ ଦେଲା। ସତେ ଯେପରି ବିନା ମେଘରେ ବଜ୍ରପାତ ହେଲା !

କିଛିଦିନ ମଧ୍ୟରେ ରାଣୀ ଛାତିକୁ ପଥର କରିଦେଲେ। ଅପମାନର ପ୍ରତିଶୋଧ ନେବାପାଇଁ ମନ୍ତ୍ରୀଙ୍କୁ ଡକାଇଲେ। ମନ୍ତ୍ରୀ ଥିଲେ ବୃଦ୍ଧ ବେବର୍ତ୍ତା ପଟ୍ଟନାୟକ। ସେ ଜାଣିଥିଲେ ବାଙ୍କିର ସୈନ୍ୟସଂଖ୍ୟା କମ୍। ଯୁଦ୍ଧରେ ଖୋର୍ଦ୍ଧାର ବିପୁଳ ସୈନ୍ୟବାହିନୀକୁ ପରାସ୍ତ କରିବା କଷ୍ଟ। ତେଣୁ ସେ ବାଙ୍କିର କିଛି ଅଂଶ ଦେଇ ଖୋର୍ଦ୍ଧା ରାଜାଙ୍କ ସହ ସନ୍ଧି କରିବାକୁ ପରାମର୍ଶ ଦେଲେ।

ରାଣୀ ଶୁକଦେଈ ଥିଲେ ବୀରାନାରୀ। ସେ ରାଜକନ୍ୟା ଓ ରାଜାଙ୍କର ରାଣୀ ଥିଲେ। ତାଙ୍କ ଶିରାପ୍ରଶିରାରେ ବୀରରକ୍ତ ପ୍ରବାହିତ ହେଉଥିଲା। ସେ ମନ୍ତ୍ରୀଙ୍କ ଉପଦେଶ ଗ୍ରହଣ କଲେ ନାହିଁ। ସେ କହିଲେ- ''ଯିଏ ମୋର ସ୍ୱାମୀଙ୍କୁ ହତ୍ୟା କରିଛି, ମୁଁ ତାହା ସହ ସନ୍ଧି କରି ନ ପାରେ। ମଣିଷ ଜନ୍ମ ହୋଇଛି, ଦିନେ ନା ଦିନେ ମରିବ। କାପୁରୁଷ ପରି ମରିବା ବୀରମାନଙ୍କଠାରେ ଶୋଭାପାଏ ନାହିଁ। ଯେତେ ଅଳ୍ପ ସୈନ୍ୟ ହେଲେ ବି ସେମାନଙ୍କୁ ନେଇ ମୁଁ ଯୁଦ୍ଧ କରିବି।''

ରାଣୀମା'ଙ୍କର କଥା ଶୁଣି ମନ୍ତ୍ରୀଙ୍କର ସାହସ ପଶିଲା । ସେ ଚାରିଆଡ଼େ ଡେଙ୍ଗୁରା ଦେଇ ସୈନ୍ୟସାମନ୍ତମାନଙ୍କୁ ଏକାଠି କଲେ । ରାଣୀ ଶୁକଦେଈ ବହୁ ଶାସ୍ତ୍ର ପଢ଼ିଥିଲେ । ସେ ସୈନ୍ୟମାନଙ୍କ ମଝିକୁ ଯାଇ କହିଲେ- "ତୁମମାନଙ୍କୁ ବୃଦ୍ଧ ରାଜା ପୁତ୍ର ଭଳି ସ୍ନେହ କରୁଥିଲେ । ଯୁଦ୍ଧକ୍ଷେତ୍ରରେ ସେ ପ୍ରାଣ ଦେଇଛନ୍ତି । ପ୍ରତିଶୋଧ ନେବା ତୁମମାନଙ୍କର ଧର୍ମ । ମୁଁ ମୋ ପାଇଁ କହୁ ନାହିଁ । ସନ୍ଧି ପ୍ରସ୍ତାବରେ ଖୋର୍ଦ୍ଧା ରାଜା ରାଜି ହୋଇପାରନ୍ତି । କିନ୍ତୁ ବାଙ୍କିଗଡ଼ର ସୁନାମ ଲୋପ ପାଇବ । ଯେଉଁ ରାଜ୍ୟକୁ ତୁମର ବାପା ଓ ଅଜାମାନେ ପ୍ରାଣଦେଇ ସ୍ୱାଧୀନ କରି ରଖିପାରିଥିଲେ, ତାହାର ପରାଧୀନତା ଦେଖିବା ଅପେକ୍ଷା ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେବା ଭଲ ।"

"ବୀର ଥରେ ମରେ । ଭୀରୁ ଶହେ ଥର ମରେ । କାଲି ସକାଳେ ମୁଁ ଯୁଦ୍ଧକ୍ଷେତ୍ରକୁ ଯିବି ତୁମର ଆଗେ ଆଗେ । ତୁମ୍ଭେମାନେ କ'ଣ ଚାହଁ? ବାଙ୍କିର ସୁନାମ, ବାଙ୍କିର ସ୍ୱାଧୀନତା ନା ଭୀରୁ ଭଳି ପରାଜିତ ହୋଇ ଘରକୋଣରେ ଲୁଚି ରହିବା ?"

ବୀର ପାଇକମାନଙ୍କ ରକ୍ତରେ ବିଜୁଳି ଖେଳିଗଲା । ରାଣୀମା', ଯାହାଙ୍କ ଦେହରେ ସୂର୍ଯ୍ୟକିରଣ ପଡ଼ି ନ ଥିଲା, ଲବଣି ପିତୁଳା ପରି ଦେହ ଧରି ସେ ଯୁଦ୍ଧକୁ ଯିବେ ଅଥଚ ସେମାନେ ଲୁଚି ରହିବେ ? ସମସ୍ତେ ଏକସ୍ୱରରେ କହିଉଠିଲେ- "ଆମେ ବାଙ୍କିର ସୁନାମ ମାଟିରେ ମିଶିବାକୁ ଦେବୁ ନାହିଁ । ଆମେ ଯୁଦ୍ଧ କରିବୁ ।"

ରାଣୀ ଶୁକଦେଈଙ୍କର ଶିଶୁପୁତ୍ର ଦୟାନିଧି । ତାକୁ ଜଣେ ବିଶ୍ୱାସୀ ଲୋକ ପାଖରେ ଛାଡ଼ିଦେଲେ । ନିଜେ ଘୋଡ଼ା ଚଢ଼ି ଯୁଦ୍ଧକୁ ବାହାରି ଗଲେ ।

ରାଣୀଙ୍କର ବୀରବେଶ। ଗୋଟିଏ ହାତରେ ବାଙ୍କିର ସ୍ୱାଧୀନ ପତାକା ଓ ଅନ୍ୟ ହାତରେ ବିରାଟ ଖଣ୍ଡା ଦେଖି ସୈନ୍ୟମାନଙ୍କର ସାହସ ବଢ଼ିଗଲା। କଳାପଥରଠାରେ ପ୍ରବଳ ଯୁଦ୍ଧ ହେଲା। ଏହି ସମୟରେ ବଡ଼ମ୍ବାର ସୈନ୍ୟମାନେ ଆସି ବାଙ୍କି ସୈନ୍ୟମାନଙ୍କ ସହ ଯୋଗ ଦେଲେ।

ଯୁଦ୍ଧରେ ଖୋର୍ଦ୍ଧାରାଜା ବନ୍ଦୀ ହେଲେ। ବନ୍ଦୀ ରାଜାଙ୍କୁ ବିଚାର ନିମନ୍ତେ ବାଙ୍କି ଦରବାରକୁ ଅଣାଗଲା। ସମସ୍ତେ ଭାବିଥିଲେ- ଖୋର୍ଦ୍ଧାରାଜାଙ୍କ ଯୋଗୁଁ ବାଙ୍କି ରାଜା ନିହତ ହୋଇଥିଲେ। ଏଥର ଖୋର୍ଦ୍ଧାରାଜାଙ୍କୁ ବାଙ୍କି ରାଣୀ ହତ୍ୟା କରିବାକୁ ଆଦେଶ ଦେବେ।

ବୀରାରାଣୀ ଶୁକଦେଈ ଥିଲେ ନାରୀ, ପତ୍ନୀ ଓ ଜନନୀ। ସେ କହିଲେ- ''ବିଧବା ହେବାର ଦାରୁଣ ଦୁଃଖ ମୁଁ ଭୋଗୁଛି। ଖୋର୍ଦ୍ଧାରାଜାଙ୍କୁ ହତ୍ୟା କରି ଖୋର୍ଦ୍ଧାରାଣୀଙ୍କୁ ମୁଁ ସେ ଦୁଃଖ ଦେଇପାରିବି ନାହିଁ।'' ସେ ସମ୍ମାନରେ ଖୋର୍ଦ୍ଧା ରାଜାଙ୍କୁ ଫେରିଯିବାକୁ କହିଲେ। ଖୋର୍ଦ୍ଧାରାଜା ନିଜର ଭୁଲ୍ ବୁଝିପାରିଲେ। ଶୁକଦେଈଙ୍କ ମହାନତା ଅନୁଭବ କରି କେତେକ ଅଞ୍ଚଳ ଓ ଆର୍ଥିକ କ୍ଷତିପୂରଣ ଦେଇ ବାଙ୍କି ସହ ସନ୍ଧି କଲେ। ଅନେକ ବର୍ଷ ବିତିଗଲେ ମଧ୍ୟ ରାଣୀ ଶୁକଦେଈଙ୍କ ବୀରତ୍ୱ ଓ ସାହସ ଇତିହାସରେ ଲେଖାହୋଇ ରହିଛି।

# ବାଳିକାର ସାହସ

ଇଂଲଣ୍ଡ ଓ ଫ୍ରାନ୍ସ ଦୁଇଟି ପାଖାପାଖି ଦେଶ। ଦୁଇ ଦେଶ ମଧ୍ୟରେ କିନ୍ତୁ ଭଲ ପଡୁ ନ ଥାଏ। ଫ୍ରାନ୍ସର ରାଜା ଖୁବ ଦୁର୍ବଳ ଥିଲେ। ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ ବରଗଣ୍ଡି ରାଜ୍ୟ। ଏହି ରାଜ୍ୟର ରାଜା ଇଂଲଣ୍ଡ ରାଜାଙ୍କର ବନ୍ଧୁ। ଉଭୟ ଫ୍ରାନ୍ସ ଦେଶ ବିରୋଧରେ ଷଡ଼ଯନ୍ତ୍ର ଚଳାଇ ଥାଆନ୍ତି। ଇଂଲଣ୍ଡ ଓ ବରଗଣ୍ଡି ମିଳିତ ହୋଇ ଫ୍ରାନ୍ସ ଆକ୍ରମଣ କଲେ। ଫ୍ରାନ୍ସର ଅନେକ ଅଞ୍ଚଳ ସେମାନଙ୍କ ଅଧୀନରେ ରହିଲା। ଫ୍ରାନ୍ସର ଗ୍ରାମେ ଗ୍ରାମେ ଇଂଲଣ୍ଡର ସୈନ୍ୟମାନେ ବୁଲିଲେ। ସାଧାରଣ ଲୋକଙ୍କ ଧନସଂପତ୍ତି ଛଡ଼ାଇ ନେଲେ। ଫ୍ରାନ୍ସବାସୀଙ୍କ ଉପରେ ଅତ୍ୟାଚାର କଲେ। ଫ୍ରାନ୍ସରେ କୋକୁଆଭୟ ହୋଇଗଲା।

ଫ୍ରାନ୍ସର ଲରେଁ ନାମରେ ଏକ ଗ୍ରାମ। ସେହି ଗ୍ରାମରେ ଜେନି ନାମରେ ଗୋଟିଏ ବାଳିକା ଥିଲା। ସେ ମେଣ୍ଢା ଚରାଉଥିଲା। ଦିନେ ମେଣ୍ଢା ଚରାଉ ଚରାଉ ସେ ଖ୍ରୀଷ୍ଟିଆନ୍ ଦେବଦୂତଙ୍କ ବାଣୀ ଶୁଣିଲା "ଜେନି, ତୁମେ ହିଁ ଫ୍ରାନ୍ସକୁ ରକ୍ଷା କରିପାରିବ।" ଏହିଭଳି ତିନି ଚାରି ଥର ଶୁଣିଲା। ପ୍ରଥମେ ସେ ନିଜ କାନକୁ ବିଶ୍ୱାସ କରିପାରୁ ନ ଥିଲା।

ଫ୍ରାନ୍ସର ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା। ଜେନି ଏସବୁ ସହ୍ୟ କରିପାରିଲା ନାହିଁ। ସେ ଲୋକଙ୍କୁ ଦେବଦୂତଙ୍କ ବାଣୀ କଥା କହିଲା। ଜେନିକୁ ଧର୍ମବାଣୀ ହୋଇଛି ଶୁଣି କେତେକ ଲୋକ ତାକୁ ସେଠାକାର ଶାସକଙ୍କୁ ଦେଖା କରିବାକୁ କହିଲେ।

ଜେନି ଖୁବ୍ ଭଲ ଝିଅଟିଏ। ଯେମିତି ସରଳ ସେମିତି ସ୍ନେହୀ। ସମସ୍ତଙ୍କ ପ୍ରତି ଉତ୍ତମ ବ୍ୟବହାର କରେ। ତେଣୁ ତାକୁ ସମସ୍ତେ ଭଲ ପାଉଥିଲେ। ଜେନି ସେଠାର ଶାସକଙ୍କୁ ଦୈବବାଣୀ କଥା କହିଲା। ସବୁ ଶୁଣିଲେ ମଧ୍ୟ ସେଠାକାର ଶାସକ ଏକଥା ବିଶ୍ୱାସ କଲେ ନାହିଁ। ସେ ଛଅ ଜଣ ସୈନ୍ୟଙ୍କ ସହ ଜେନିକୁ ରାଜାଙ୍କ ପାଖକୁ ପ୍ୟାରିସ୍ ପଠାଇଦେଲେ। ସେଠାରେ ରାଜା ମଧ୍ୟ ବିଶ୍ୱାସ କଲେ ନାହିଁ। ସେ ଜେନିକୁ ପରୀକ୍ଷା କରିବା ନିମନ୍ତେ ଛଦ୍ମବେଶ ଧାରଣ କରି ରାଜଦରବାରରେ ଅନ୍ୟମାନଙ୍କ ସହ ମିଶି ବସିଥିଲେ।

ଜେନି ଖୁବ୍ ଚାଲାକ ଥିଲା। ସେ ଛଦ୍ମବେଶୀ ରାଜାଙ୍କୁ ଚିହ୍ନିଦେଲା। ତାଙ୍କ ପାଖକୁ ଯାଇ କହିଲା- "ମହାରାଜ ଫ୍ରାନ୍ସକୁ ରକ୍ଷା କରିବା ପାଇଁ ଈଶ୍ୱର ମୋତେ ଏଠାକୁ ପଠାଇଛନ୍ତି। ମୁଁ ବାରମ୍ବାର ଦୈବବାଣୀ ଶୁଣିଛି।" ରାଜା ବିଶ୍ୱାସ ନ କଲେ ମଧ୍ୟ ଘୋର ଦୁଃଖରେ ଥିଲେ। ତାଙ୍କର ରାଜ୍ୟ ବୋଲି କେତେକ ଅଞ୍ଚଳ ମାତ୍ର ଥିଲା। ତେଣୁ ଅଭିଷେକ ହୋଇପାରି ନ ଥିଲା। କାଳେ ଜେନି କଥା ସତ ହୋଇଥିବ। ଏହି ଆଶାରେ ସେ ଚାରି ହଜାର ସୈନ୍ୟ ଦେଇ ଗୋଟିଏ ଛୋଟ ଦୁର୍ଗ ଇଂରେଜମାନଙ୍କ କବଳରୁ ମୁକ୍ତ କରିବାକୁ ପଠାଇଲେ।

ଜେନି ପୁରୁଷ ବେଶ ଧରି ଘୋଡ଼ା ଉପରେ ଚଢ଼ି ହାତରେ ଖଣ୍ଡା ଧରି ଆଗେଇ ଚାଲିଲା। ତା'ର ମୁଖମଣ୍ଡଳରୁ ଅପୂର୍ବ ଜ୍ୟୋତି ବାହାରୁଥାଏ। ସୈନ୍ୟମାନେ ବିଶ୍ୱାସ କଲେ ଯେ ଜେନିକୁ ନିଶ୍ଚୟ ଦେବତାମାନେ ପଠାଇଛନ୍ତି।

ସୈନ୍ୟମାନଙ୍କ ମନରେ ଆଶା ସଞ୍ଚାର ହେଲା । ଇଂରେଜ ସୈନ୍ୟଙ୍କ ସହ ପ୍ରବଳ ଯୁଦ୍ଧ ହେଲା । ଜେନିର ରଣକୌଶଳ ଓ ବୀରତ୍ୱ ଦେଖି ଫ୍ରାନ୍‌ସର ସୈନ୍ୟମାନେ ମନେ ମନେ ବିଜୟୀ ହେବାର ଆଶା ପୋଷଣ କଲେ । ସତକୁ ସତ ଜେନି ବିଜୟୀ ହେଲା ।

ତା'ପରେ ଜେନି ସୈନ୍ୟମାନଙ୍କୁ ନେଇ ଗୋଟିଏ ପରେ ଗୋଟିଏ ଦୁର୍ଗ ଇଂରେଜମାନଙ୍କ ହାତରୁ ମୁକ୍ତ କଲା । ଇଂରେଜ ସୈନ୍ୟମାନେ ଜେନିର ସାହସ ଓ ବୀରତ୍ୱ ଦେଖି ଯୁଦ୍ଧ କ୍ଷେତ୍ରରୁ ପଛଘୁଞ୍ଚା ଦେଲେ । ସେମାନେ ଫ୍ରାନ୍ସର ଲୟର ନଦୀ ପର୍ଯ୍ୟନ୍ତ ହଟିଗଲେ ।

ଜେନି ପ୍ୟାରିସ୍‌କୁ ଫେରିଲା । ରାଜାଙ୍କର ଖୁସିର ସୀମା ରହିଲା ନାହିଁ । ଫ୍ରାନ୍ସର ସିଂହାସନରେ ତାଙ୍କର ଅଭିଷେକ ହେଲା । ରାଜା ଜେନିକୁ ବହୁତ ପୁରସ୍କାର ଦେଇ ରାଜଦରବାରରେ ସମ୍ମାନିତ କଲେ । ଜେନି କହିଲା- "ମହାରାଜ! ମୋର ଧନରତ୍ନ, ମାନସମ୍ମାନ କିଛି ଲୋଡ଼ା ନାହିଁ । ଫ୍ରାନ୍ସକୁ ଇଂରେଜମାନଙ୍କ ହାତରୁ ପୂରାପୂରି ମୁକ୍ତ ନ କଲାଯାଏ ମୋ ମନରେ ଶାନ୍ତି ନାହିଁ ।"

ଏହାପରେ ବାଳିକା ଜେନି ବରଗଣ୍ଡି ରାଜାଙ୍କ ବିରୋଧରେ ଯୁଦ୍ଧଯାତ୍ରା କଲା । କିନ୍ତୁ ଦୁର୍ଭାଗ୍ୟବଶତଃ ବରଗଣ୍ଡିର ସୈନ୍ୟମାନଙ୍କ ହାତରେ ଜେନି ବନ୍ଦୀ ହେଲା । ସେମାନେ ଜେନିକୁ ନେଇ ଇଂଲଣ୍ଡର ରାଜାଙ୍କ ପାଖରେ ସମର୍ପଣ କଲେ ।

ଇଂଲଣ୍ଡର ରାଜା ଫ୍ରାନ୍ସର ଧର୍ମଯାଜକମାନଙ୍କୁ ପ୍ରଚୁର ଲାଞ୍ଚ ଦେଲେ । ସେତେବେଳେ ଧର୍ମଯାଜକମାନଙ୍କ କଥାର

ଗୁରୁତ୍ୱ ଥିଲା। ସେମାନେ କହିଲେ- "ଜେନି ଗୋଟିଏ ଡାହାଣୀ। ଝିଅ ହୋଇ ପୁରୁଷ ବେଶ ପିନ୍ଧିବା ମଧ୍ୟ ଧର୍ମଦ୍ରୋହ। ସେ ଦେଶବାସୀଙ୍କୁ ଭ୍ରମରେ ପକାଇଛି।"

ଫ୍ରାନ୍ସର ଧର୍ମଯାଜକମାନଙ୍କର ବିଚାର ଇଂରେଜ ସୈନ୍ୟମାନଙ୍କୁ ସାହସ ଦେଲା। ସେମାନେ ୧୪୩୧ ମସିହା ମେ ମାସରେ ଜେନିକୁ ନିଆଁରେ ପୋଡ଼ି ମାରି ପକାଇଲେ। ୧୪୧୨ ମସିହାରେ ଜନ୍ମ ହୋଇଥିବା କୃଷକ ବାଳିକାଟି ମାତ୍ର ୧୯ ବର୍ଷ ବୟସରେ ଦେଶ ପାଇଁ ଜୀବନ ଦେଇଦେଲା।

ପରେ ଫରାସୀ ଜାତିକୁ ବୁଦ୍ଧି ଦିଶିଲା। ସେମାନେ ନୀରବ ରହିବାରୁ ଜେନିର ପ୍ରାଣ ଗଲା। ସେମାନେ ଭୁଲ୍ କରିଛନ୍ତି ବୋଲି ଅନୁତାପ କଲେ। ଜେନିକୁ ଯେଉଁଠାରେ ଜୀଅନ୍ତା ପୋଡ଼ାଯାଇଥିଲା, ସେଠାରେ ଜେନି ଘୋଡ଼ା ପିଠିରେ ଚଢ଼ି ଯୁଦ୍ଧକୁ ଯାଉଥିବାର ଏକ ବିରାଟ ପଥର ମୂର୍ତ୍ତି ଗଢ଼ାଗଲା। ଜେନିର ବୀରତ୍ୱ ଓ ସାହସ ସଂପର୍କରେ କେତେ କବିତା, ନାଟକ ଓ ଉପନ୍ୟାସ ଲେଖାଗଲା। ଇଂଲଣ୍ଡର ପ୍ରସିଦ୍ଧ ନାଟକ ଲେଖକ ଜର୍ଜ ବର୍ଣ୍ଣାଡ଼୍ସ ଜେନି ଉପରେ ଏକ ସୁନ୍ଦର ନାଟକ ରଚନା କରିଥିଲେ। ସେ ତାକୁ ଜଣେ ଦେବଦୂତର ସମ୍ମାନ ଦେଇଥିଲେ।

ସାମାନ୍ୟ ଚାଷୀଘରର ଝିଅଟିଏ। ବିପଦବେଳେ ସାହସ ଧରି ଆଗେଇ ଆସି ନ ଥିଲେ ଫ୍ରାନ୍ସ ଛାରଖାର ହୋଇଯାଇଥାନ୍ତା। ଇଂଲଣ୍ଡ ସହ ମିଶିଯାଇ ନିଜର ସ୍ୱାଧୀନ ସ୍ଥିତି ହରାଇ ବସିଥାନ୍ତା।

ଆମର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁ ଇଂରେଜ ବିରୋଧରେ ଲଢ଼ି ଜେଲ୍‌ରେ ଥିଲେ।

ସେତେବେଳେ ତାଙ୍କ ଝିଅ ଇନ୍ଦିରାଙ୍କୁ ମାତ୍ର ଦଶ ବର୍ଷ। ନେହେରୁ ପ୍ରତିଦିନ ଜେଲ୍‌ରୁ ଇନ୍ଦିରାଙ୍କ ପାଖକୁ ଚିଠି ଦେଉଥିଲେ। ସେଥିରେ ଜେନିଙ୍କ ବିଷୟରେ ପଢ଼ିବା ପାଇଁ ଉପଦେଶ ଦେଇଥିଲେ। ଇନ୍ଦିରା ପିଲାଦିନରୁ ଜେନିଙ୍କ ବିଷୟ ପଢ଼ି ନିଜକୁ ସେହିପରି ଗଢ଼ିବାକୁ ପ୍ରେରଣା ପାଇଥିଲେ।

# ମଦର ଟେରେସା

ଇଉରୋପ ମହାଦେଶରେ ଯୁଗୋସ୍ଲୋଭିଆ ଏକ ଦେଶ । ୧୯୧୦ ମସିହା ଅଗଷ୍ଟ ୨୭ ତାରିଖରେ ସେଇଠି କୃଷକ ପରିବାରରେ ଝିଅଟିଏ ଜନ୍ମ ହୋଇଥିଲା । ତା ନାଁ ଥିଲା 'ଆଗ୍ନେଶ୍' । ଆଗ୍ନେଶ୍ର ଅର୍ଥ ହେଉଛି ମେଷ ଶାବକ । ପିଲାଦିନୁ ମେଣ୍ଢାଛୁଆ ଭଳି ସେ ଥିଲା ନିରୀହା ଓ ସରଳା । ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି ଆଗ୍ନେଶ୍ ଯେ ଦିନେ ବଡ଼ ମଣିଷ ହେବ, ଏ କଥା ତା'ର ପିଲାଦିନରୁ ଜଣାପଡ଼ିଥିଲା । ମାତ୍ର ୧୨ ବର୍ଷ ବୟସରୁ ଦୁଃଖୀଦରିଦ୍ରଙ୍କ ସେବା ପ୍ରତି ତାର ଆଗ୍ରହ ବଢ଼ିଥିଲା । ଏକଥା ଆଖପାଖ ଲୋକ ଲକ୍ଷ୍ୟ କରି ଖୁସି ହେଉଥିଲେ ।

୧୯୨୫ ମସିହା । ଆଗ୍ନେଶ୍ ଆସିଥିଲା କଲିକତା । ଏଠାରେ ଦୁଃଖୀରଙ୍କଙ୍କୁ ଦେଖି ତା ମନ ତରଳି ଯାଇଥିଲା । ସେ ଠିକ୍ କଲା କଲିକତାରେ ରହି ନିରାଶ୍ରୟଙ୍କର ସେବା କରିବ । ଏହାକୁ ଜୀବନର ବ୍ରତରୂପେ ଧରିନେଲା । ସେଥିପାଇଁ ବର୍ଷେ ସେବିକା ତାଲିମ୍ ନେଲା । ତା'ପରେ ନରନାରାୟଣଙ୍କ ସେବାରେ ସାରା ଜୀବନ ବିତାଇଦେଲା । ଏହି ଝିଅଟି ଆଉ କେହି ନୁହେଁ । ସେ ହେଉଛନ୍ତି 'ମଦର ଟେରେସା' ବା 'ମା' ଟେରେସା' । ସାରା ପୃଥିବୀରେ ତାଙ୍କୁ ନ ଚିହ୍ନେ କିଏ ?

୧୯୨୯ରେ କଲିକତାରେ ଥିବା ସେଣ୍ଟମେରୀ ବିଦ୍ୟାଳୟରେ ସେ ଭୂଗୋଳ ଶିକ୍ଷୟିତ୍ରୀ ଥିଲେ । କିନ୍ତୁ ସେତିକିରେ ତାଙ୍କ ମନ ମାନିଲା ନାହିଁ । ଥରେ ସେ

ଦାର୍ଜିଲିଂ ଯାଉଥିଲେ। ଟ୍ରେନ୍‌ରେ ଯିବା ସମୟରେ ସେ ଭଗବାନଙ୍କ ବାଣୀ ଶୁଣିଲେ। ସତେ ଯେପରି ଏକ ଅଦୃଶ୍ୟ ଶକ୍ତି ତାଙ୍କୁ କହୁଛି- "ତୁମେ ମୋ ପଛେ ପଛେ ଆସ। ଦୁଃଖୀଦରିଦ୍ରଙ୍କ ସେବାରେ ଲାଗ। ମୁଁ ତୁମ ସଙ୍ଗରେ ଅଛି।"

ଅଳ୍ପଦିନ ପରେ ସେ କଲିକତା ରାସ୍ତାରେ ଚାଲି ଚାଲି ଯାଉଥିଲେ। ଦେଖିଲେ ଗୋଟିଏ ଗରିବ ଲୋକ ଡାକ୍ତରଖାନା ରାସ୍ତା କଡ଼ରେ ପଡ଼ି ମର ମର ହେଉଛି। ଲୋକଟିର ପାଦରୁ ମାଂସ ବାହାରି ପଡ଼ିଛି। ତା' ଦେହସାରା ଘା' ହୋଇଯାଇଛି। ଘା'ରେ ପୋକମାଛି ସାଲୁ ସାଲୁ ହେଉଛନ୍ତି। ରାସ୍ତାରେ ଗଲା ଲୋକ ଆଖି ବୁଲେଇ ନାକରେ ରୁମାଲ୍ ଦେଇ ଚାଲି ଯାଉଛନ୍ତି।

ଆଗ୍ନେଶ୍ ସେ ଲୋକଟିକୁ ଦେଖି ତା' ପାଖକୁ ଗଲେ। ନିଜର ସବୁ ଶକ୍ତି ଖଟାଇ ତାକୁ କାନ୍ଧରେ ପକାଇଲେ। ପାଖରେ ଥିବା ଡାକ୍ତରଖାନାକୁ ନେଲେ। କିନ୍ତୁ ଏଭଳି ରୋଗୀକୁ ରଖିବା ପାଇଁ ଡାକ୍ତର ମଧ୍ୟ ରାଜି ହେଲେ ନାହିଁ। ସେ ନିଜେ ଲୋକଟିର ଘା' ଧୋଇ ସଫା କରିଦେଲେ। ନିଜ ପାରୁପର୍ଯ୍ୟନ୍ତ ସେବା କଲେ।

ସେତେବେଳେ କଲିକତାର ମୋତିଝିଲ୍‌ରେ ଗରିବ ଲୋକମାନେ ପୋକମାଛି ପରି ସଡୁଥାଆନ୍ତି। ଆଗ୍ନେଶ୍ ସ୍ଥିର କଲେ ସବୁଠାରୁ ଦରିଦ୍ରତମ ଲୋକଙ୍କ ପାଖରେ ସେ ରହିବେ। ତେଣୁ ସେ ମୋତିଝିଲ୍‌ରେ ରହିଲେ। ଆଗ୍ନେଶ୍‌ଙ୍କ ପାଖରେ ସେତେବେଳେ ମୋଟେ ପାଞ୍ଚ ଟଙ୍କା ଥାଏ। ଏତିକି ଟଙ୍କାରେ ସେ ନିଜେ କିପରି ଚଳିବେ? ରୋଗୀମାନଙ୍କର ସେବା କିପରି କରିବେ?

ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସେ। କଲିକତାର ଜଣେ ଭଦ୍ରଲୋକ ତାଙ୍କ ଘରୁ ଗୋଟିଏ ବଖରା ଆଗ୍ନେଶ୍‌ଙ୍କୁ ଦେଲେ। ସେହି ଘରେ ରହି ରୋଗୀମାନଙ୍କୁ ପାଖରେ ରଖି ସେ ସେବା କଲେ। କିନ୍ତୁ ଗୋଟିଏ ବଖରାରେ କେତେ ରୋଗୀଙ୍କୁ ଜାଗା ହେବ? ଆଗ୍ନେଶ୍‌ଙ୍କ ଅନୁରୋଧ ରଖି ସେ ଭଦ୍ରଲୋକ ଆଉ ଗୋଟିଏ ବଖରା ଛାଡ଼ି ଦେଇଥିଲେ। ଦିନକୁ ଦିନ ରୋଗୀଙ୍କ ସଂଖ୍ୟା ବଢ଼ି ଚାଲିଲା। ଶେଷରେ ଭଦ୍ରଲୋକ ଜଣକ ପୂରା ଘରଟିକୁ ଛାଡ଼ିଦେଲେ।

କ୍ରମେ ଦୁଃଖୀ, ରୋଗୀମାନେ ବଢ଼ିଲା ନଈର ସୁଅପରି ତାଙ୍କ ପାଖରେ ପହଞ୍ଚିଲେ। ସେ କଲିକତାର କାଳିମନ୍ଦିର ପାଖରେ ଏକ ଧର୍ମଶାଳାରେ ସେମାନଙ୍କ ଚିକିତ୍ସା କଲେ। ସଂସାରରେ ସବୁବେଳେ ଅନେକ ଲୋକ ଥାଆନ୍ତି ଯେଉଁମାନେ ଭଲ କାମ ସହି ପାରନ୍ତି ନାହିଁ। ତାଙ୍କ ସେବାକାମ ଦେଖି କେତେକ ଲୋକ କହିଲେ- ''ଏ ମହିଳା ଜଣକ ଗରିବ ଲୋକମାନଙ୍କୁ ଖ୍ରୀଷ୍ଟିଆନ କରି ଦେଉଛି। ଏହାକୁ ଏଠୁ ବିଦା କରିବା ଦରକାର।'' ଲୋକେ ପୋଲିସ୍ ହାକିମଙ୍କ ପାଖରେ ପହଞ୍ଚି ତାଙ୍କୁ ବାହାର କରିଦେବା ପାଇଁ କହିଲେ। ହାକିମ କହିଲେ- ''ମୁଁ ଆଗ ଦେଖେ। ତା'ପରେ ବିଚାର କରିବା।'' ହଠାତ୍ ହାକିମ ଯାଇ ଠିକଣା ଜାଗାରେ ପହଞ୍ଚିଗଲେ। ଆଗ୍ନେଶ୍ ରୋଗୀମାନଙ୍କ ସେବା କରୁଥାଆନ୍ତି। ରୋଗୀମାନଙ୍କ ଘା'ରୁ ପୂଜ, ରକ୍ତ, ପୋକ ଆଦି ନିଜ ହାତରେ ସଫା କରୁଥାଆନ୍ତି। ଚାରିଆଡ଼ ଗନ୍ଧ ହେଉଥାଏ।

ପୋଲିସ୍ ହାକିମ ଅବାକ୍ ହେଲେ। ତାଙ୍କ ପାଟିରୁ କଥା ବାହାରିଲା ନାହିଁ। ସେ ଫେରି ଆସିଲେ। ଯେଉଁମାନେ

ଅଭିଯୋଗ କରିଥିଲେ ସେମାନଙ୍କୁ କହିଲେ- "ମୋର ଗୋଟିଏ ସର୍ତ୍ତରେ ରାଜି ହେଲେ ମୁଁ ଖ୍ରୀଷ୍ଟିଆନ ମହିଳାଙ୍କୁ ବାହାର କରିଦେବି। ତୁମେମାନେ ବା ତୁମର ମା' ଓ ଭଉଣୀମାନେ ଆସି ଯଦି ଏପରି ରୋଗୀମାନଙ୍କ ସେବା କରିପାରିବେ, ତା'ହେଲେ ମୁଁ ତାଙ୍କୁ ସଙ୍ଗେ ସଙ୍ଗେ ବାହାର କରିଦେବି।" ସମସ୍ତଙ୍କ ମୁହଁ କଳା ପଡ଼ିଗଲା।

ଥରେ ମନ୍ଦିରର ଜଣେ ପୂଜକଙ୍କୁ ହଇଜା ଧରିଲା। ପୂଜକ ରାସ୍ତାକଡ଼ରେ ଅସହାୟ ହୋଇ ପଡ଼ିଥାନ୍ତି। ଆଗ୍ନେଶ୍ ତାଙ୍କୁ ଧର୍ମଶାଳାକୁ ନେଇ ଆସିଲେ। ତାଙ୍କର ସେବାକରି ତାଙ୍କୁ ଭଲ କରିଦେଲେ। ଏଥର ତାଙ୍କର ଆଉ କେହି ଶତ୍ରୁ ରହିଲେ ନାହିଁ। ସମସ୍ତେ ତାଙ୍କୁ ଭକ୍ତି କଲେ। ଆଗ୍ନେଶ୍ ହୋଇଗଲେ 'ମଦର ଟେରେସା'।

ଆମ ଦେଶରେ କୁଷ୍ଠରୋଗୀମାନଙ୍କୁ ଅଧିକାଂଶ ଲୋକ ଘୃଣା କରନ୍ତି। ସେମାନଙ୍କୁ ଘରୁ ବାହାର କରିଦିଅନ୍ତି। ଏମିତି ଅବହେଳିତ ହୋଇ ପାଞ୍ଚ ଜଣ କୁଷ୍ଠରୋଗୀ ମଦର ଟେରେସାଙ୍କ ସାହାଯ୍ୟ ଲୋଡ଼ିଲେ। ସେ କୁଷ୍ଠରୋଗୀମାନଙ୍କ ଚିକିତ୍ସା ପାଇଁ ଗୋଟିଏ ଆଶ୍ରମ ଖୋଲିଲେ। ବହୁ ସରକାରୀ, ବେସରକାରୀ ସ୍ୱେଚ୍ଛାସେବୀମାନେ ଅର୍ଥ ଓ ଶ୍ରମଦାନ କଲେ। ୩୪ ଏକର ଜମି ଉପରେ ଏହି ଆଶ୍ରମଟି ତିଆରି ହେଲା। ଏହାକୁ 'ଶାନ୍ତି ନଗର' କୁହାଯାଉଛି।

୧୯୬୨ରେ ରାଷ୍ଟ୍ରପତି ଭବନରେ ତାଙ୍କୁ 'ପଦ୍ମଶ୍ରୀ' ସମ୍ମାନ ପ୍ରଦାନ କରାଗଲା। ଏହି ସନ୍ନ୍ୟାସିନୀ ସମ୍ମାନ ଗ୍ରହଣ କଲାବେଳେ ସମସ୍ତେ ଚୁପ୍‌ଚାପ୍ ହୋଇଯାଇଥିଲେ। ଏକ ଅବହେଳିତ ଶିଶୁକୁ କୋଳକୁ ନେଲାପରି ସେ

ପୁରସ୍କାରଟିକୁ ଗ୍ରହଣ କଲେ। ଏହି ସଭାରେ ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଉପସ୍ଥିତ ଥିଲେ। ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁ ମଧ୍ୟ ଉପସ୍ଥିତ ଥିଲେ। ଦୁହେଁ ଅତି ଭାବପ୍ରବଣ ହୋଇ ଯାଇଥିଲେ। ଦୁହିଁଙ୍କ ଆଖି ଛଳ ଛଳ ହୋଇଯାଇଥିଲା।

୧୯୬୪ରେ ସେବିକାମାନଙ୍କୁ ନେଇ ସେ ବମ୍ବେ ଆସିଲେ। ବମ୍ବେର କୋଟି କୋଟି ଦୀନଦୁଃଖୀ ଓ ରୋଗୀମାନଙ୍କର ସେବାରେ ଲାଗିପଡ଼ିଲେ। ସେହି ସମୟରେ ପୋପ୍ ପୋଲ୍ ବମ୍ବେକୁ ଆସିଥିଲେ। ସେ ହେଉଛନ୍ତି ଖ୍ରୀଷ୍ଟ ଜଗତର ଧର୍ମଗୁରୁ। ସେ ତାଙ୍କର ଅତି ଦାମିକା ମଟର ଗାଡ଼ିଟିକୁ ମା' ଟେରେସାଙ୍କୁ ଉପହାର ଦେଇଗଲେ।

ସେ ନୀଳ ଧଡ଼ିଥିବା. ଧଳାଶାଢ଼ି ଖଣ୍ଡେ ପିନ୍ଧି ଅତି ସରଳ ଜୀବନ ଯାପନ କରନ୍ତି। ଏତେ ଦାମିକା କାର୍ ସେ ବା କ'ଣ କରିବେ? ସେ ଏହି କାରଟିକୁ ଲଟେରୀ କରି ବିକ୍ରି କରିଥିଲେ। ସେଥିରୁ ସେ ୪ ଲକ୍ଷ ୬୦ ହଜାର ଟଙ୍କା ପାଇଥିଲେ। ଏହି ଟଙ୍କାରେ ସେ କୁଷ୍ଠରୋଗୀଙ୍କ ପାଇଁ ଆଉ ଗୋଟିଏ ଆଶ୍ରମ କରିଦେଲେ।

ତାଙ୍କର ନିଃସ୍ୱାର୍ଥପର ସେବା·ଦେଖି ଲୋକେ ସାହାଯ୍ୟ କରିବାକୁ ଆଗେଇ ଆସିଲେ। ପ୍ରଚୁର ଅର୍ଥ ତାଙ୍କ ପାଖରେ ଜମା ହେଲା। ଖାଲି ଭାରତରେ ନୁହେଁ, ପୃଥିବୀର ବହୁ ଅନୁନ୍ନତ ଜାଗାରେ ସେ ସେବାଶ୍ରମ ପ୍ରତିଷ୍ଠା କଲେ। ଦେଶବିଦେଶରୁ ଅନେକ ପୁରସ୍କାର ପାଇଲେ। ସାରା ପୃଥିବୀର ଶ୍ରେଷ୍ଠ ସମ୍ମାନ 'ନୋବେଲ୍ ପୁରସ୍କାର' ତାଙ୍କୁ ମିଳିଲା। ସେ ପାଇଥିବା ସମସ୍ତ ପୁରସ୍କାରର ଅର୍ଥ ଦରିଦ୍ର ଓ

ରୋଗୀମାନଙ୍କର ସେବାରେ ଲଗାଇଛନ୍ତି।

ସେ ଆଜି ସାରା ପୃଥିବୀରେ 'ମଦର ଟେରେସା' ନାମରେ ସୁପରିଚିତା। ଧନ୍ୟ ତୁମେ ନାରୀ! ଧନ୍ୟ ତୁମର ସାହସ! ଧନ୍ୟ ତୁମର ସେବା! ଧନ୍ୟ ତୁମର ସାଧନା!!!

ସେ କହନ୍ତି-

''ତୁମେ ଯଦି ପ୍ରାର୍ଥନା କରିବ, ତୁମେ ବିଶ୍ୱାସ କରିବ। ତୁମେ ଯଦି ବିଶ୍ୱାସ କରିବ, ତୁମେ ପ୍ରେମ କରିବ। ଆଉ ତୁମେ ଯଦି ପ୍ରେମ କରିବ, ତୁମେ ସେବା କରିପାରିବ।''

